# ସମ୍ବାଦପତ୍ରର ବିକାଶ
# ଓ
# ସାମ୍ବାଦିକତା

ଶିବ ପ୍ରସାଦ ତ୍ରିପାଠୀ



ଓଡ଼ିଶା ବୁକ୍ ଷ୍ଟୋର

# ସମ୍ବାଦପତ୍ରର ବିକାଶ
# ଓ
# ସାମ୍ବାଦିକତା

ଲେଖକ :
**ଶିବ ପ୍ରସାଦ ତ୍ରିପାଠୀ**
ବଡ଼ବଜାର, ସମ୍ବଲପୁର
୭୬୮ ୦୦୧, ଓଡ଼ିଶା

ପ୍ରକାଶକ :
**ଗୋବିନ୍ଦ ଚରଣ ପାତ୍ର**
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦ ବିହାରୀ, କଟକ-୭୫୩ ୦୦୨

ପ୍ରଥମ ସଂସ୍କରଣ : **୧୯୯୦**

ମୁଦ୍ରାକର :
**ପ୍ରିଣ୍ଟର୍ସ ନାରାୟଣୀ**
ସାହେବଜାଦା ବଜାର, କଟକ ୭୫୩ ୦୦୨

ମୂଲ୍ୟ : **ଦଶଟଙ୍କା**
ଶୋଭନ : **ବାରଟଙ୍କା ପଚାଶ ପଇସା**

**Sambadpatrara Bikash**
**O' Sambadikata**

Written by
**Shiba Prasad Tripathy**

Published by
**G. C. Patra**
**ORISSA BOOK STORE**
Binod Behari, Cuttack-753 002

Price : Rs. **Twelve & Fifty Paise**

# ସାମାନ୍ୟ କଥନ

ସାଂପ୍ରତିକ କାଳରେ ସମଗ୍ର ବିଶ୍ୱରେ ସମ୍ବାଦପତ୍ର ଓ ସାମ୍ବାଦିକତାର ଭୂମିକା ସମ୍ପର୍କରେ ଜଣା ଅଧିକେ ସମସ୍ତେ ଅବଗତ । ଆଜି ଯେଉଁମାନେ ପ୍ରତ୍ୟକ୍ଷ ଭାବରେ ଏହି କ୍ଷେତ୍ରରେ ଜଡ଼ିତ, ସେମାନଙ୍କର ଏ ଦିଗରେ ସ୍ୱତନ୍ତ୍ର ଧାରଣା ଓ ରୁଚି ରହିଛି ।

ବିଭିନ୍ନ ଦୈନିକ ସମ୍ବାଦପତ୍ରର ସମ୍ବାଦଦାତା, ସହ-ସମ୍ପାଦକ, ବାର୍ତ୍ତା-ସମ୍ପାଦକ ଏବଂ ପରିଚାଳନା ସମ୍ପାଦକ ପଦରେ ତଥା ଭିନ୍ନ ଭିନ୍ନ ସମୟରେ ଦୁଇଟି ମାସିକ ପତ୍ରିକାର ସମ୍ପାଦକ ଭାବରେ ଦାୟିତ୍ୱ ତୁଲାଇ ସମ୍ବାଦପତ୍ରର ବିକାଶ ଓ ସାମ୍ବାଦିକତା ସମ୍ପର୍କରେ ମୋର ଯେଉଁ ଅନୁଭବ ଓ ଅଭିଜ୍ଞତା ହୋଇଛି, ସେ ସବୁକୁ ପ୍ରକାଶ କରିବା, ପୁଣି ବିସ୍ତୃତ ଭାବରେ ପ୍ରକାଶ କରିବାର ଅବକାଶ ଏଠାରେ ନାହିଁ । ତେବେ ସାମ୍ବାଦିକତା କ୍ଷେତ୍ରରେ ନୂତନ ଭାବରେ ପ୍ରବେଶ କରିଥିବା ଓ କରୁଥିବା ଯୁବବର୍ଗ, ଏ କ୍ଷେତ୍ରରେ ସମ୍ପର୍କିତ ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀଗଣ ଏବଂ ଏ ବିଷୟରେ ରୁଚି ରଖୁଥିବା ପାଠକବର୍ଗ ଏହି ପୁସ୍ତକ ପାଠକରି ଉପକୃତ ହେବେ ବୋଲି ଆଶା ।

ସମ୍ବାଦପତ୍ର ଓ ସାମ୍ବାଦିକତାର ସ୍ଥିତି, ଗତି ଓ ପ୍ରକୃତିକୁ ଏହାର ବିବର୍ତ୍ତନର କ୍ରମ ପରିଣାମ ବୋଲିଯାଇପାରେ । ଏହି ପୁସ୍ତକର ବିଭିନ୍ନ ପରିଚ୍ଛେଦରେ ସମଗ୍ର ବିଶ୍ୱରେ ସମ୍ବାଦପତ୍ର କିପରି ବିକାଶ ଲାଭ କଲା, ଆମ ଦେଶ ତଥା ରାଜ୍ୟରେ କିପରି ଏହି ଧାରା ବିକଶିତ ହେଲା, ସାମ୍ବାଦିକତାର ସ୍ୱରୂପ, କାର୍ଯ୍ୟପଦ୍ଧତି ଓ ସମ୍ବାଦ ଲେଖନ କଳା ପ୍ରଭୃତି ବିଷୟରେ ଯଥାସମ୍ଭବ ସଂକ୍ଷେପରେ ଆଲୋଚନା କରିଛି । ମୁଁ କୌଣସି ଇତିହାସ ଲେଖିନାହିଁ କିମ୍ବା ସୂଚୀପତ୍ର ପ୍ରସ୍ତୁତ କରିନାହିଁ । ମୋର ଉପଲକ୍ଷ୍ୟ ବିଷୟର କ୍ଷେତ୍ର ବ୍ୟାପକ ହୋଇଥିଲେ ହେଁ ପୁସ୍ତକଟିର କଳେବର ଯଥା ସମ୍ଭବ କ୍ଷୁଦ୍ର କରିବା ଲାଗି ଉଦ୍ୟମ କରିଛି । ସାମ୍ବାଦିକତା କ୍ଷେତ୍ରରେ ଅଠରବର୍ଷର ଅଭିଜ୍ଞତା ଓ ଅନୁଭବ ମୋଟ ଏଇ ପୁସ୍ତକ 'ସମ୍ବାଦପତ୍ରର

ବିକାଶ ଓ ସାମ୍ପ୍ରଦାୟିକତା" ଲେଖନ ନିମନ୍ତେ ପ୍ରେରଣା ଯୋଗାଇଛି । ଓଡ଼ିଆ ଭାଷାରେ ଏଭଳି ଏକ ପୁସ୍ତକ ପ୍ରକାଶନର ଆବଶ୍ୟକତା ମଧ୍ୟ ଅନେକ ଦିନରୁ ଅନୁଭୂତ ହେଉଥିଲା । ମୋର ଏହା ଏକ କ୍ଷୀଣ ଉଦ୍ୟମ ମାତ୍ର । ପରବର୍ତ୍ତୀ କାଳରେ ଚିନ୍ତାଶୀଳ ଲେଖକଗଣ ଏ ଦିଗରେ ବ୍ୟାପକତର ପ୍ରୟାସ କରିବେ ବୋଲି ମୋର ବିଶ୍ୱାସ ।

ଅନେକ ପ୍ରକାଶିତ ବିବରଣୀରୁ ଏହି ପୁସ୍ତକ ନିମନ୍ତେ ତଥ୍ୟାବଳୀ ସଂଗ୍ରହ କରାଯାଇଛି ଓ ସାମ୍ପ୍ରଦାୟିକ-ସୁଲଭ ମନୋଭାବ ନେଇ ସ୍ୱଳ୍ପକାଳ ମଧ୍ୟରେ ପରିବେଷଣ କରାଯାଇଛି । ଏଥିରେ ଅନେକ ତ୍ରୁଟି ବିଚ୍ୟୁତି ଥାଇପାରେ । ପାଠକମାନେ ସହମାଧ୍ୟମରେ ସେଗୁଡିକ ଦର୍ଶାଇଲେ ପରବର୍ତ୍ତୀ ସଂସ୍କରଣରେ ଯଥୋଚିତ ବ୍ୟବସ୍ଥା ଗ୍ରହଣ କରାଯିବ । ଆଉ ଯେଉଁମାନେ କୌଣସିମତେ ଛିଦ୍ର ଖୋଜିବା ଲାଗି ପ୍ରତିଜ୍ଞାବଦ୍ଧ ହେବେ, ସେମାନଙ୍କ ନିମନ୍ତେ ମୋର କୌଣସି ଶବ୍ଦ ନାହିଁ । ପ୍ରତ୍ୟେକ ପାଠକ ମୋ ସହ ଏକମତ ହେବେ, ଏପରି ଉଦ୍ଭଟ ଚିନ୍ତା ମୁଁ ମଧ୍ୟ କେବେହେଲେ କରିନାହିଁ ।

ଏହି ପୁସ୍ତକରେ ବର୍ଣ୍ଣିତ ବିଷୟବସ୍ତୁ ଦ୍ୱାରା କେହି କେହି ତୁଷ୍ଟ ଅଥବା କେହି କେହି ରୁଷ୍ଟ ହୋଇଥାଇ ପାରନ୍ତି । ଏଭଳି ଘଟଣାକୁ ଆକସ୍ମିକ ସଂଯୋଗ ବୋଲି କହିବା ଯଥାର୍ଥ ହେବ ।

ଯେଉଁ ହିତାକାଙ୍କ୍ଷୀ ବନ୍ଧୁବର୍ଗ ଏହି ପୁସ୍ତକ ରଚନା ଲାଗି ମୋର ଅଭିଳାଷକୁ ସମର୍ଥନ ଓ ପ୍ରକାଶନ ଦିଗରେ ଉତ୍ସାହିତ କରିଛନ୍ତି, ସେମାନଙ୍କ ନିକଟରେ ମୁଁ କୃତଜ୍ଞ । ଏହି ପୁସ୍ତକର ପ୍ରକାଶକ ସର୍ବାଦୌ କୃତଜ୍ଞତାର ପାତ୍ର । ମୁଁ ଲକ୍ଷ୍ୟ କରିଛି, ସେ ବିପୁଳ ଉତ୍ସାହ ଓ ଉଦ୍ଦୀପନା ସହ ଦାୟିତ୍ୱ ନିର୍ବାହ କରିଛନ୍ତି ।

ବିଜୟାଦଶମୀ
୧୯୯୦

ଶିବ ପ୍ରସାଦ ତ୍ରିପାଠୀ

# ସୂଚୀ





# ସମ୍ବାଦପତ୍ର ଓ ସାମ୍ବାଦିକତାର ଆଦିପର୍ବ

ସାମ୍ବାଦିକତା, ଏହାର ସାମାଜିକ ଆବଶ୍ୟକତା ଓ ଆଧୁନିକ ବିକାଶ ପର୍ବରେ ଏହାର ଭୂମିକା ତଥା ସମ୍ବାଦପତ୍ର ଓ ସାମ୍ବାଦିକତାର କ୍ରମବିକାଶ ସମ୍ପର୍କରେ ପ୍ରତ୍ୟେକ ସାମ୍ବାଦିକ ତଥା ପାଠକବର୍ଗ ଜାଣିରଖିବା ଆବଶ୍ୟକ । ବିଶ୍ୱର ଅର୍ଥନୈତିକ ଓ ସାମାଜିକ ପରିବର୍ତ୍ତନ କ୍ରମରେ ସାମ୍ବାଦିକତାର ଧାରା ଓ ଅଭିମୁଖ୍ୟରେ କିଭଳି ପରିବର୍ତ୍ତନ ଘଟିଛି ତାହାର ମଧ୍ୟ ସାଧାରଣ ଅନୁଶୀଳନ ଆବଶ୍ୟକ ।

ସାମ୍ବାଦିକତା ଓ ଗଣ ଯୋଗାଯୋଗ ପ୍ରଣାଳୀ ଜନଜୀବନ ସହ ଓତପ୍ରୋତ ଭାବରେ ଜଡ଼ିତ । ପୂର୍ବେ ସାମ୍ବାଦିକତାର ସ୍ଥିତି, ଗତି ଓ ପ୍ରକୃତି ଯାହାଥିଲା, ବର୍ତ୍ତମାନ ତହିଁରେ ଭିନ୍ନତା ଦେଖାଦେଇଛି ଓ ଭବିଷ୍ୟତରେ ପୁଣି ନୂତନ ଦୃଷ୍ଟିଭଙ୍ଗୀ ଉଦ୍ଭାସିତ ହେବ । କାରଣ ଏହାର ଧାରା ଓ ଅଭିମୁଖ୍ୟ ସର୍ବଦା ଗତିଶୀଳ ।

ସମ୍ବାଦପତ୍ର, ସମ୍ବାଦ ସରବରାହ ସଂସ୍ଥା, ରେଡ଼ିଓ, ଟେଲିଭିଜନ ଓ ଚଳଚ୍ଚିତ୍ର ପ୍ରଭୃତି ଗଣମାଧ୍ୟମର ସ୍ଥିତି, ଗତି ଓ ପ୍ରକୃତିକୁ ଜାଣିବା ଲାଗି ତଥା ଏହାର ଭବିଷ୍ୟତ ସମ୍ବନ୍ଧ କଳ୍ପନା କରିବାଲାଗି, ଏହାର ବର୍ତ୍ତମାନକୁ ଜାଣିବା ପ୍ରୟୋଜନ । ଏହି ଗଣମାଧ୍ୟମଗୁଡ଼ିକର ଧାରା ଓ ଅଭିମୁଖ୍ୟରେ ମୌଳିକ ସାମଞ୍ଜସ୍ୟ ରହିଥିଲେ ହେଁ ବସ୍ତୁତଃ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୋଇଥାଏ । ଏଗୁଡ଼ିକର ଉଦ୍ଭବ ଓ ବିକାଶ ବିଭିନ୍ନ ରାଷ୍ଟ୍ରରେ ଭିନ୍ନ ଭିନ୍ନ ସମୟରେ ଘଟିଛି ।

ପ୍ରଥମେ ସମ୍ବାଦପତ୍ର, ସାମ୍ବାଦିକତା ଓ ସମ୍ବାଦ ସରବରାହ ସଂସ୍ଥାର ଆଦ୍ୟପର୍ବ ସଂପର୍କରେ ବିଶ୍ଳେଷଣ।

ପୂର୍ବେ ଦୂତ ପ୍ରେରଣକରି, ବାଜାବଜାଇ, ନିଆଁ ଜାଳି, ପାରା ଉଡ଼ାଇ କିମ୍ବା ହସ୍ତଲିଖିତ ପତ୍ର ସର୍ବସାଧାରଣ ସ୍ଥାନରେ ବଡ଼ପାଟିରେ ପାଠ କରାଇ ଅଥବା ଅନ୍ୟ ଅନୁରୂପ ପନ୍ଥାରେ ଲୋକମାନଙ୍କୁ ଖବରମାନ ଜଣାଇ ଦିଆଯାଉଥିଲା, ଆଦେଶନାମା ଶୁଣାଇ ଦିଆଯାଉଥିଲା ଓ ଆସନ୍ନ ବିପଦ ସମ୍ପର୍କରେ ସତର୍କ କରାଇ ଦିଆଯାଉଥିଲା। ନୃତ୍ୟଗୀତ ମାଧ୍ୟମରେ ଲୋକେ ଅନେକ ତଥ୍ୟ ଜାଣିପାରୁଥିଲେ। କ୍ରମେ ସାମ୍ବାଦିକତା ଜନସମ୍ପର୍କ କ୍ଷେତ୍ରରେ ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ ହେଲା ଓ ମୁଦ୍ରିତ ଖବର ପ୍ରସାରଣର ଆବଶ୍ୟକତା ଅନୁଭୂତ ହେଲା। ଏହା ହିଁ ସମ୍ବାଦପତ୍ର ଓ ସାମ୍ବାଦିକତାର ମୂଳଭିତ୍ତି।

ସର୍ବପ୍ରଥମେ ପଶ୍ଚିମ ୟୁରୋପର ବିଭିନ୍ନ ଦେଶରେ ପତ୍ରପତ୍ରିକା-ଗୁଡ଼ିକ ଷୋଡ଼ଶ ଶତାବ୍ଦୀ ଶେଷରେ ଏବଂ ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ପ୍ରକାଶିତ ହୋଇଥିଲା। ଷୋଡ଼ଶ ଶତାବ୍ଦୀରେ ଜର୍ମାନୀ, ସୁଇଜରଲାଣ୍ଡ, ଇଟାଲି ଏବଂ ଅନ୍ୟାନ୍ୟ ଦେଶରେ ସମ୍ବାଦପତ୍ର ପ୍ରକାଶିତ ହୋଇଥିଲା ବୋଲି ଜଣା-ଯାଏ। ଏହାଥିଲା ସମ୍ବାଦପତ୍ର ଓ ପତ୍ରପତ୍ରିକାର ଆଦ୍ୟପର୍ବ। ୧୫୯୭ ରେ "Mercury" ନାମରେ ସମ୍ବାଦପତ୍ର ପ୍ରକାଶ କରି ବ୍ୟବସାୟିକ ଖବରମାନ ମୁଦ୍ରିତ ଆକାରରେ ପ୍ରସାରଣ ନିମନ୍ତେ ଫ୍ଲୋରେନ୍ସର ଗିର୍ଲି ନାମକ ଜଣେ ବ୍ୟକ୍ତି ଅନୁମତି ପାଇଥିଲେ ବୋଲି ଜଣାଯାଇଥିଲେ ମଧ୍ୟ ସେ ତାହା ପ୍ରକାଶ କରିଥିଲେ କି ନାହିଁ ଏପର୍ଯ୍ୟନ୍ତ ଜଣାଯାଇ ନାହିଁ। କାରଣ ତାହାର ମୁଦ୍ରିତ କପି ମିଳିପାରିନାହିଁ। ତେବେ ଏହା ନିଶ୍ଚିତ ଭାବରେ କୁହାଯାଇ-ପାରେ ଯେ ଏବେ ଯେମିତି ସମ୍ବାଦପତ୍ର ଓ ପତ୍ରପତ୍ରିକା ପ୍ରକାଶନ ଲାଗି ପ୍ରଶାସନର ଅନୁମୋଦନ ଆବଶ୍ୟକ ହେଉଛି, ଏହି ବ୍ୟବସ୍ଥା ପୂର୍ବେ ମଧ୍ୟ ଥିଲା। ଏଗୁଡ଼ିକୁ ନିୟନ୍ତ୍ରଣାଧୀନ ରଖିବାଲାଗି ଅନୁମୋଦନ ସମୟରେ କେତେକ ସର୍ତ୍ତ ମଧ୍ୟ ଆରୋପ କରାଯାଉଥିଲା।

ରାଜକୀୟ ଶାସନରେ ସର୍ତ୍ତର ଅବମାନନା କ୍ଷେତ୍ରରେ କଠୋର ଦଣ୍ଡର ବ୍ୟବସ୍ଥା ମଧ୍ୟ ଥିଲା। ପ୍ରାରମ୍ଭରୁ ହିଁ ଜନମତର ନିୟନ୍ତ୍ରଣରେ ଗଣ-ମାଧ୍ୟମଗୁଡ଼ିକର ପ୍ରଭାବ ସମ୍ପର୍କରେ ଶାସକବର୍ଗ ସଚେତନ ଥିଲେ।

ସାମାଜିକ ସମସ୍ୟାବଳୀ ପ୍ରାରମ୍ଭିକ ଅବସ୍ଥାରେ ସମ୍ବାଦପତ୍ରର ମୁଖ୍ୟ ଉପଜୀବ୍ୟ ଥିଲା । ଏଥିରେ ବ୍ୟବସାୟ, ମହାମାରି, ଆବିଷ୍କାର, ନୂତନ ବସ୍ତୁର ମୂଲ୍ୟ ଓ ସ୍ୱଳ୍ପତା ତଥା ଶାସକବର୍ଗଙ୍କର ଆଦେଶନାମା ପ୍ରକାଶ ପାଉଥିଲା । ଏଥିଲାଗି ଆବଶ୍ୟକ ହେଲା ସମ୍ବାଦ ସଂଗ୍ରହ, ଲେଖନ, ପ୍ରେରଣ ଓ ସମ୍ପାଦନା । ଏହା ହିଁ ସାମ୍ବାଦିକତାର ଆଦିପର୍ବ ।

ପ୍ରଥମ ରାଜନୈତିକ ସମ୍ବାଦପତ୍ର "Current and General News" ୧୬୨୨ରେ ଇଂଲଣ୍ଡରୁ ସାପ୍ତାହିକ ଭାବରେ ପ୍ରକାଶିତ ହୋଇଥିଲା । ପରେ ରାଜନୈତିକ ଦିଗରୁ ତୁଳନାତ୍ମକ ଭାବରେ ବିକଶିତ ଅନ୍ୟାନ୍ୟ ଦେଶରେ ଏଭଳି ସମ୍ବାଦପତ୍ରମାନ ପ୍ରକାଶିତ ହେଲା ।

ରାଜନୈତିକ ଓ ଅର୍ଥନୈତିକ ସମ୍ବାଦମାନ ଜାଣିବାଲାଗି ଲୋକଙ୍କ ମଧ୍ୟରେ ବ୍ୟଗ୍ରତା ପ୍ରକାଶ ପାଇବାପରେ ଦୈନିକ ସମ୍ବାଦପତ୍ର ପ୍ରକାଶନର ଆବଶ୍ୟକତା ଅନୁଭୂତ ହେଲା । ଜର୍ମାନୀର ଲେପିଜିଗ୍‌ରୁ ୧୬୫୦ ଜୁଲାଇ ପହିଲାରୁ ଦୁଇବର୍ଷ ପର୍ଯ୍ୟନ୍ତ ଦୈନିକ "Ein Komende Zeitungen" ପ୍ରକାଶ ପାଇଥିଲା ।

ପ୍ରଥମେ କେବଳ ଛାପାଖାନା ମାଲିକମାନେ ସମ୍ବାଦପତ୍ର ପ୍ରକାଶନରେ ମନୋନିବେଶ କରିଥିଲେ । ସେମାନେ ସମ୍ବାଦପତ୍ର ମାଧ୍ୟମରେ ପ୍ରତିଷ୍ଠିତ ନାଗରିକ ଭାବରେ ଗଣାହେବା ଲାଗି ଅଭିଳାଷ ରଖୁଥିଲେ ।

ଫ୍ରାନ୍ସର କାର୍ଡିନାଲଙ୍କ ଜଣେ ଖ୍ୟାତନାମା ଡାକ୍ତର ରାଜକୀୟ ପ୍ରୋତ୍ସାହନରେ ପ୍ୟାରିସ୍‌ରୁ esmeରେ "Gazette"ର ପ୍ରକାଶନ ଆରମ୍ଭ କରିଥିଲେ । ପୂର୍ବରୁ ସେ ଏକ ବିଜ୍ଞାପନ ଏଜେନ୍ସି ମଧ୍ୟ ଖୋଲିଥିଲେ ଓ ପୃଷ୍ଠପୋଷକତାରେ ସମ୍ବାଦପତ୍ର ପ୍ରକାଶନ ଲାଗି ଅନୁମତି ପାଇଥିଲେ ।

୧୬୬୫ରେ ଲଣ୍ଡନରୁ ସରକାରୀ ସମ୍ବାଦପତ୍ର "ଲଣ୍ଡନ ଗେଜେଟ" ପ୍ରକାଶ ପାଇଲା ।

୧୭୭୬ ବେଳକୁ ଲଣ୍ଡନରୁ ପ୍ରକାଶିତ ହେଉଥିବା ସମ୍ବାଦପତ୍ରଗୁଡ଼ିକର ସଂଖ୍ୟା ଥିଲା ୫୩ ।

୧୭୮୫ରେ "ଡେଲି ୟୁନିଭର୍ସାଲ ରେଜିଷ୍ଟ୍ରାର" ନାମରେ ପ୍ରକାଶିତ ସମ୍ବାଦପତ୍ର ୧୭୮୮ରେ "ଟାଇମ୍‌ସ" ନାମରେ ନାମିତ ହୋଇଥିଲା ଓ ପରବର୍ତ୍ତୀକାଳରେ ସମଗ୍ର ବିଶ୍ବରେ ପ୍ରସିଦ୍ଧି ଲାଭ କରିଥିଲା ।

"Gazette" ମୁଖ୍ୟତଃ ଚତୁର୍ଦ୍ଦଶ ଲୁଇଙ୍କର ମୁଖପତ୍ର ଥିଲା ଓ ଲୋକପ୍ରିୟତା ମଧ୍ୟ ଅର୍ଜନ କରିଥିଲା । ଏଥିରୁ ଅନ୍ୟମାନେ ଅନୁପ୍ରାଣିତ ହେଲେ ଓ ସମ୍ବାଦପତ୍ର ପ୍ରକାଶନ ପ୍ରତି ଆଗ୍ରହୀ ହେଲେ । ତେବେ ସମ୍ବାଦପତ୍ରର ମାନ ଓ ଆଭିମୁଖ୍ୟରେ ବ୍ୟାପକ ପରିବର୍ତ୍ତନ ଦେଖାଦେଲା ।

ଏହି ସମୟରେ ସଙ୍ଘବଦ୍ଧ ଭାବରେ ବିସ୍ତୃତ ସମ୍ବାଦ ସଂଗ୍ରହର ପ୍ରକ୍ରିୟା ଆରମ୍ଭ ହେଲା । ଅଷ୍ଟ୍ରିଆ ରାଜପରିବାରର ଯୁବରାଜଗଣ ଯେଉଁମାନେ ପଦପ୍ରଯୁକ୍ତ ପୋଷ୍ଟମାଷ୍ଟର ଜେନେରାଲ ଭାବରେ ଅବସ୍ଥାପିତ ହୋଇଥିଲେ ସେମାନେ ନିଜର ଶାଖା ପ୍ରଶାଖାଗୁଡ଼ିକ ଜରିଆରେ ବିସ୍ତୃତ ଓ ବ୍ୟାପକ ଭାବରେ ସମ୍ବାଦ ସଂଗ୍ରହ କାର୍ଯ୍ୟ ଆରମ୍ଭ କଲେ ।

ଅନ୍ୟାନ୍ୟ ଦେଶରେ ମଧ୍ୟ ଏହି କାର୍ଯ୍ୟ ଆରମ୍ଭ ହେଲା ଓ ସଂଗୃହୀତ ସମ୍ବାଦଗୁଡ଼ିକର ସମ୍ପାଦନାପୂର୍ବକ ଚୂଡ଼ାନ୍ତ ସମ୍ବାଦମାନ ପ୍ରସ୍ତୁତ କରାଗଲା । ସମ୍ବାଦପତ୍ରଗୁଡ଼ିକ ପ୍ରାୟତଃ ଏଭଳି ସମ୍ବାଦ ସଂଗ୍ରହ ଓ ସରବରାହ ସଂସ୍ଥାଗୁଡ଼ିକ ଉପରେ ନିର୍ଭରକଲେ । ଏହା ହିଁ ସମ୍ବାଦ ସରବରାହ ସଂସ୍ଥାଗୁଡ଼ିକର ପ୍ରାରମ୍ଭିକ ଅବସ୍ଥା ବୋଲି କୁହାଯାଇପାରେ ।

ସାମ୍ବାଦିକତା କ୍ଷେତ୍ରରେ କ୍ରମେ କଳା, ସାହିତ୍ୟ ଓ ସଂସ୍କୃତି ମଧ୍ୟ ସ୍ଥାନ ପାଇଲା । ସାମ୍ବାଦିକତା ମଧ୍ୟ ବିଭିନ୍ନ ରାଷ୍ଟ୍ରରେ ଭିନ୍ନ ଭିନ୍ନ ସମୟରେ ଆରମ୍ଭ ହୋଇଥିଲା ତଥା କ୍ରମେ ବିକଶିତ ହୋଇଥିଲା ।

ପ୍ରାରମ୍ଭିକ ଅବସ୍ଥାରେ କେବଳ ବଡ଼ ବଡ଼ ପୁଞ୍ଜିପତିମାନେ ସମ୍ବାଦପତ୍ର ଦ୍ୱାରା ଉପକୃତ ହେଉଥିଲେ ତଥା ଶାସକବର୍ଗ ସେମାନଙ୍କର ଉଦ୍ଦେଶ୍ୟ ସାଧନ କରୁଥିଲେ । କ୍ରମେ ମୁଦ୍ରଣ ଶିଳ୍ପରେ ପ୍ରଭୂତ ଉନ୍ନତି ଘଟିଲା ଓ ସମ୍ବାଦପତ୍ରଗୁଡ଼ିକର ପ୍ରସାରଣ ସଂଖ୍ୟା ବୃଦ୍ଧି ଲାଗି ସାଧାରଣ ଜନତାର ଧ୍ୟାନାକର୍ଷଣ, ସମ୍ବାଦପତ୍ର ପକ୍ଷରେ ଏକ ଆବଶ୍ୟକତା ରୂପରେ ଦେଖାଦେଲା ।

୧୮୪୦ରେ ଇଂଲଣ୍ଡରେ ଜାତୀୟ କଲ୍ୟାଣ ସଂଘ ଗଠିତ ହୋଇଥିଲା ଓ ଅବହେଳିତ ଜନତାର ସୁରକ୍ଷା ଦିଗରେ ସ୍ପଷ୍ଟ ପଦକ୍ଷେପ ଗ୍ରହଣ କଲା । ଏହାର ଫଳସ୍ୱରୂପ ଲିଡ୍‌ସରୁ ୧୮୪୭ରେ "Northern Star" ସମ୍ବାଦ-ପତ୍ର ପ୍ରକାଶିତ ହେଲା ।

୧୮୪୮-୪୯ରେ କାର୍ଲମାର୍କସ ଏବଂ ଫେଡ୍ରେରିକ୍ ଏଙ୍ଗେଲସ "New Rheinische Zeitung" (ନିଉ ରେହିନସ୍ ଜିଟାଙ୍ଗ) ସମ୍ବାଦପତ୍ର ପ୍ରକାଶକରି ସାମ୍ବାଦିକତାରେ ସାମ୍ୟବାଦୀ ଚେତନାର ମୂଳଦୁଆ ପକାଇଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ "କମ୍ୟୁନିଷ୍ଟ ଇସ୍ତାହାର" ମଧ୍ୟ ୧୮୪୮ରେ ଘୋଷଣା କରାଯାଇଥିଲା । ଶ୍ରେଣୀ ସଂଘର୍ଷର ବିକାଶକ୍ରମ ସଂକ୍ରାନ୍ତ ଜନସାଧାରଣଙ୍କୁ ସଚେତନ କରିବା ଏଗୁଡ଼ିକର ଲକ୍ଷ୍ୟ ଥିଲା ।

୧୮୩୫ରେ ଫ୍ରାନ୍‌ସରେ ଚାର୍ଲସ ହବାସ "Agence Havas" ନାମରେ ଏକ ସମ୍ବାଦ ପରିବେଷଣ ସଂସ୍ଥା ଆରମ୍ଭ କଲେ ଓ ସମ୍ବାଦ ସଂଗ୍ରହ ତଥା ମୂଲ୍ୟ ବିନିମୟରେ ସମ୍ବାଦପତ୍ରଗୁଡ଼ିକୁ ସମ୍ବାଦ ଯୋଗାଣ କାର୍ଯ୍ୟ ଆରମ୍ଭ କରିଥିଲେ ।

କ୍ରମେ ସମ୍ବାଦପତ୍ର ପ୍ରକାଶନ ବ୍ୟାପ୍ତ ବଢ଼ିଲା । ସମ୍ପାଦନା କାର୍ଯ୍ୟା-ଳୟମାନ ପ୍ରତିଷ୍ଠିତ ହେଲା ଏବଂ ପୂର୍ଣ୍ଣ ସମୟ କାର୍ଯ୍ୟକରୁଥିବା ସାମ୍ବାଦିକ ଓ ଅଣ ସାମ୍ବାଦିକ କର୍ମଚାରୀବର୍ଗଙ୍କର ଆବିର୍ଭାବ ଘଟିଲା । ଏହି କାଳରେ ସମ୍ବାଦପତ୍ର ପ୍ରକାଶକମାନେ ବିଜ୍ଞାପନ ମାଧ୍ୟମରେ ପ୍ରଭୂତ ଅର୍ଥଲାଭ କଲେ ଓ ସମ୍ବାଦପତ୍ରକୁ ଏକ ଲାଭଜନକ ବ୍ୟବସାୟ ଭାବରେ ଗ୍ରହଣ କରାଯାଇପାରିବ ବୋଲି ସ୍ପଷ୍ଟ ଧାରଣା ସୃଷ୍ଟିମାନ ହେଲା । ତେବେ କେବଳ ବିଜ୍ଞାପନ ମାଧ୍ୟମରେ ସମ୍ବାଦପତ୍ର ପରିଚାଳନା ସେହି କାଳରେ ମଧ୍ୟ ସମ୍ଭବ ହେଉନଥିଲା ।

୧୮୫୧ରେ ଜୁଲିୟସ ରୟଟର ଲଣ୍ଡନରେ ରୟଟର ସମ୍ବାଦ ପରିବେଷଣ ସଂସ୍ଥା ଆରମ୍ଭ କଲେ । ପୂର୍ବରୁ ୧୮୪୯ରେ ବର୍ଣ୍ଣାର୍ଡ ଓଲ୍‌ଫ "Wolffsches Telegraphenburo" ସମ୍ବାଦ ପରିବେଷଣ ସଂସ୍ଥା ଗଠନ କରିଥିଲେ । ଜୁଲିୟସ ରୟଟର ଓ ବର୍ଣ୍ଣାର୍ଡ ଓଲ୍‌ଫ ପୂର୍ବରୁ Agence Havas ସମ୍ବାଦ ପରିବେଷଣ ସଂସ୍ଥାରେ କାର୍ଯ୍ୟ କରୁଥିଲେ ।

୧୮୭୦ରେ ରଏଟର, ହବାସ ତଥା ଓଲଭ୍ ସଂସ୍ଥା ଓ ପରେ ନ୍ୟୁୟର୍କର **Associated Press Agency** ଏକ ରାଜିନାମା ବଳରେ କିଏ କେଉଁ ରାଷ୍ଟ୍ରରେ ସମ୍ବାଦ ସଂଗ୍ରହ କରିବେ ତାହା ସ୍ଥିର କରିନେଲେ ଓ ଏଥିସହ ସମ୍ବାଦ ସଂଗ୍ରହରେ ଏକଚାଟିଆ କାରବାର ବା **Monopoly Press**ର ପ୍ରବର୍ତ୍ତନ ହେଲା ।

ଉକ୍ତ ରାଜିନାମା ବଳରେ ରଏଟର ସଂସ୍ଥା ବ୍ରିଟିଶ ସାମ୍ରାଜ୍ୟ, ତୁର୍କି ଓ ଦୂରପ୍ରାଚ୍ୟ ଦେଶ ସମୂହରେ ସମ୍ବାଦ ସଂଗ୍ରହ ଦାୟିତ୍ୱ ପାଇଥିଲା । ସେହିପରି ହବାସ ସଂସ୍ଥା ଫ୍ରାନ୍ସ, ସୁଇଜରଲାଣ୍ଡ, ଇଟାଲି, ସ୍ପେନ, ପର୍ତ୍ତୁ-ଗାଲ, କେନ୍ଦ୍ରୀୟ ଓ ଦକ୍ଷିଣ ଆମେରିକାରେ ସମ୍ବାଦ ସଂଗ୍ରହ ଦାୟିତ୍ୱ ପାଇଥିଲା । ଇଜିପ୍ଟରେ ରଏଟର ଓ ହବାସ ମିଳିତ ଭାବରେ କାର୍ଯ୍ୟକଲେ । ଓଲ୍‌ଫ ସଂସ୍ଥାକୁ ଜର୍ମାନୀ, ଅଷ୍ଟ୍ରିଆ-ହଙ୍ଗେରୀ, ହଲାଣ୍ଡ, ସ୍କାଣ୍ଡିନେଭିଆ, ବଲ୍‌କାନ ଦେଶସମୂହ ଓ ରୁଷିଆ ଛାଡ଼ି ଦିଆଯାଇଥିବାବେଳେ ଆସୋସିଏ-ଟେଡ଼ ପ୍ରେସ୍ ଏଜେନ୍‌ସିକୁ ଯୁକ୍ତରାଷ୍ଟ୍ର ଆମେରିକାରେ ସମ୍ବାଦ ସଂଗ୍ରହ କାର୍ଯ୍ୟ ଛାଡ଼ିଦିଆଗଲା ।

ଏହି ସମୟରେ ସମ୍ବାଦପତ୍ର ସଂଖ୍ୟା ବ୍ୟାପକ ଭାବରେ ବୃଦ୍ଧି ପାଇ-ବାକୁ ଲାଗିଲା । ପରେ ପରେ ରେଡ଼ିଓ ତଥା କଳାଧଳା ଟେଲିଭିଜନ ଏବଂ ରଙ୍ଗୀନ ଟେଲିଭିଜନ ଗଣଯୋଗାଯୋଗ କ୍ଷେତ୍ରରେ ପ୍ରବେଶ କଲା ଓ ସ୍ୱଳ୍ପକାଳ ମଧ୍ୟରେ ବ୍ୟାପିଗଲା । ଉପଗ୍ରହ ଯୋଗାଯୋଗ ବ୍ୟବସ୍ଥା ପ୍ରଚଳିତ ହେବାପରେ ବିଶ୍ୱର ଯେକୌଣସି ଅଞ୍ଚଳର ଘଟଣାବଳୀ ସଙ୍ଗେ ସଙ୍ଗେ **Live Telecast** ମାଧ୍ୟମରେ ବିଶ୍ୱର ଯେକୌଣସି ଅଞ୍ଚଳରେ ଦେଖାଇ ଦିଆଯିବା ସମ୍ଭବ ହେଲା ।

ଏକ ତୁଳନାତ୍ମକ ଅଧ୍ୟୟନରୁ ଜଣାଯାଇଛି ଯେ, ସମସ୍ତ ଦୈନିକ ସମ୍ବାଦପତ୍ରର ମିଳିତ ପ୍ରସାରଣ ସଂଖ୍ୟା ୨୮ ନିୟୁତ ହେବାଲାଗି ପ୍ରାୟ ଚାରିଶହ ବର୍ଷ ଲାଗିଗଲା । ଅପର ପକ୍ଷରେ ରେଡ଼ିଓ ପ୍ରଚଳନର ପ୍ରାରମ୍ଭିକ ୪୦ ବର୍ଷରେ ୪୦୦ ନିୟୁତ ଲାଇସେନ୍‌ସଧାରୀ ରେଡ଼ିଓ ମାଲିକ ଥିଲାବେଳେ ଟେଲିଭିଜନ ପ୍ରସାରଣର ପ୍ରଥମ ୩୦ ବର୍ଷରେ ୬୦୦ ନିୟୁତ ଟେଲିଭିଜନ ସେଟ୍ ବିକ୍ରୟ ହୋଇଥିଲା । ଏଥିରୁ ସମ୍ବାଦପତ୍ର କିଭଳି ମନ୍ଥର ଗତିରେ

ବିକାଶଲାଭ କରୁଛି, ତାହା ଜଣାଯାଏ । ଚଳଚ୍ଚିତ୍ର ଦର୍ଶକମାନଙ୍କର ସଂଖ୍ୟା ମଧ୍ୟ ଆଶାତୀତ ଭାବରେ ବୃଦ୍ଧିପାଇବାରେ ଲାଗିଛି । ବହୁ ପ୍ରାମାଣିକ ଚିତ୍ର ନିର୍ମିତ ହୋଇଛି ।

ସମ୍ବାଦପତ୍ର, ରେଡ଼ିଓ ତଥା ଟେଲିଭିଜନ ପ୍ରସାରଣରେ ସାମ୍ବାଦିକତାର ଭୂମିକା ବଳବତ୍ତର ରହିଆସିଛି । ସମ୍ବାଦପତ୍ର କ୍ରମେ ଜନସାଧାରଣରେ ସ୍ଥାୟୀ ପ୍ରଭାବ ବିସ୍ତାର କରି ଚାଲିଛି । ଟେଲିଭିଜନର ବ୍ୟାପକ ପ୍ରସାର ଯୋଗୁଁ ସମ୍ବାଦପତ୍ରର ବିକାଶ ବାଧାପ୍ରାପ୍ତ ହେବ ବୋଲି ଯେଉଁ ଆଶଙ୍କା ପ୍ରକାଶ ପାଉଥିଲା, ତାହା ଅମୂଳକ ପ୍ରମାଣିତ ହୋଇଛି । ବରଂ ରେଡ଼ିଓର ପ୍ରସାର କେତେକାଂଶରେ ବାଧାପ୍ରାପ୍ତ ହୋଇଛି ବୋଲି କୁହାଯାଇପାରେ ।

ସମଗ୍ର ବିଶ୍ୱରେ ସମ୍ବାଦପତ୍ର ଏକ ଶିଳ୍ପଭାବରେ ପ୍ରତିଷ୍ଠିତ ହୋଇଛି । ସମ୍ବାଦପତ୍ରର ପ୍ରସାରଣ ସଂଖ୍ୟା ମଧ୍ୟ ବହୁଗୁଣିତ ହୋଇଛି । ଅତ୍ୟାଧୁନିକ ବୈଜ୍ଞାନିକ ଜ୍ଞାନ କୌଶଳର ପ୍ରୟୋଗ ଦ୍ୱାରା ସମ୍ବାଦପତ୍ର ଶିଳ୍ପ ଶିଖର ସୋପାନରେ ଅଧିଷ୍ଠିତ ।

ଏହା ମଧ୍ୟ ସତ୍ୟ ଯେ ସ୍ୱାଭାବିକ ଭାବରେ କେତେକ ସମ୍ବାଦପତ୍ର ଶହ ଶହ ବର୍ଷ ଧରି ନିରବଚ୍ଛିନ୍ନ ଭାବରେ ପ୍ରକାଶିତ ହୋଇ ଆସୁଥିବାବେଳେ ଅନେକ ସମ୍ବାଦପତ୍ର ଅକାଳରେ ବନ୍ଦ ହୋଇଯାଇଛି ।

ସାଂପ୍ରତିକ କାଳରେ ସମ୍ବାଦପତ୍ର ଓ ସାମ୍ବାଦିକତା ବିଭିନ୍ନ ସ୍ତର ଦେଇ ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟରେ ପହଞ୍ଚିଛି । ସମ୍ବାଦପତ୍ର ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ଭାବରେ ପରିଗଣିତ ହେଉଛି ।

□□□

# ଭାରତରେ ସମ୍ବାଦପତ୍ରର ବିକାଶ

ଭାରତରେ ସମ୍ବାଦପତ୍ର ପ୍ରକାଶନର ଶୁଭାରମ୍ଭ ହୋଇଥିଲା ୧୭୮୦ ଜାନୁୟାରୀ ୨୯ ତାରିଖରେ । ଇଷ୍ଟଇଣ୍ଡିଆ କମ୍ପାନୀର ଜନୈକ ବ୍ରିଟିଶ କର୍ମଚାରୀ ଉଇଲିୟମ୍ ହିକି ଭାରତର ପ୍ରଥମ ସମ୍ବାଦପତ୍ର "ବେଙ୍ଗଲ ଗେଜେଟ" ପ୍ରକାଶ କରିଥିଲେ ତଥା ଗଭର୍ଣ୍ଣର ଜେନେରାଲ ଏବଂ ଚିଫ୍ ଜଷ୍ଟିସଙ୍କ ବିରୁଦ୍ଧରେ ସମାଲୋଚନାତ୍ମକ ଲେଖାମାନ ପ୍ରକାଶ କରୁଥିଲେ । ପରିଣାମ ସ୍ୱରୂପ ତାଙ୍କୁ କାରାଦଣ୍ଡ ଭୋଗିବାକୁ ପଡ଼ିଲା ଓ ଶେଷରେ ସେ ନିର୍ବାସିତ ହେଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ସେହି ବର୍ଷ ଲଣ୍ଡନରୁ "ଟାଇମ୍ସ" ସମ୍ବାଦପତ୍ରର ପ୍ରକାଶନ ଆରମ୍ଭ ହୋଇଥିଲା ।

ଉଇଲିୟମ୍ ବୋର୍ଲ୍ଡର ନାମକ ଜଣେ ବ୍ୟକ୍ତି କଲିକତାରେ ସର୍ବପ୍ରଥମେ ଏକ ଛାପାଖାନା ବସାଇବା ଫଳରେ ତାଙ୍କୁ ୟୁରୋପକୁ ନିର୍ବାସିତ କରିଦିଆଯାଇଥିଲା । ଏହାପରେ ଉଇଲିୟମ ଡୁଆନ "ଦି ବେଙ୍ଗଲ ଜର୍ଣ୍ଣାଲ" ନାମକ ଏକ ଇଂରାଜୀ ସମ୍ବାଦପତ୍ର ପ୍ରକାଶ କରିଥିଲେ ଓ ସେ ମଧ୍ୟ ସରକାରଙ୍କ ଦ୍ୱାରା ଦଣ୍ଡିତ ହେଲେ । ଡକ୍ଟର ଜେମ୍ସ ବ୍ରାଇସ୍ "ଏସିଆଟିକ୍ ମିରର୍" ସମ୍ବାଦପତ୍ର ପ୍ରକାଶ କରିବାପରେ ସରକାର ସମ୍ବାଦପତ୍ରଗୁଡ଼ିକ ପ୍ରତି ସାମାନ୍ୟ କୋହଳ ମନୋଭାବ ପୋଷଣ କରିଥିଲେ ।

୧୭୮୫ରେ ରିଗାର୍ଡ ଜନସନ ମାଦ୍ରାଜରୁ "ମାଦ୍ରାଜ କୁରିଅର" ନାମକ ଏକ ପତ୍ରିକା ପ୍ରକାଶ କରିଥିଲେ । ୧୭୮୯ରେ ବମ୍ବେର ପ୍ରଥମ ସମ୍ବାଦପତ୍ର "ବମ୍ବେ ହେରାଲ୍ଡ" ପ୍ରକାଶ ପାଇଥିଲା ।

ଭାରତୀୟମାନଙ୍କ ମଧ୍ୟରୁ ସର୍ବପ୍ରଥମେ ରାଜା ରାମମୋହନ ରାୟ ଏକାଧିକ ଭାଷାରେ ସମ୍ବାଦପତ୍ର ପ୍ରକାଶ କରିଥିଲେ । ସମ୍ବାଦପତ୍ର ମାଧ୍ୟମରେ କୁସଂସ୍କାର ଦୂରୀକରଣ, ସାମାଜିକ ଉତ୍ଥାନ ଓ ଭାରତରୁ ବ୍ରିଟିଶ ଶାସନର ଅବସାନ ଘଟାଇବା ଦିଗରେ ପ୍ରଗାଢ଼ ଉଦ୍ୟମ ଚାଲିଥିଲା ।

"ସମାଚାର ସୁଧାବର୍ଷଣ" ଭାରତର ସର୍ବପ୍ରଥମ ହିନ୍ଦୀ ଦୈନିକ ସମ୍ବାଦପତ୍ର । ଏହା ଏକ ସଙ୍ଗେ ହିନ୍ଦୀ ଓ ବଙ୍ଗଳାରେ ପ୍ରକାଶିତ ହେଉଥିଲା । ଶ୍ରୀ ଶ୍ୟାମସୁନ୍ଦର ସେନ ଏହାର ସମ୍ପାଦକ ଥିଲେ । ୧୮୫୪ରୁ ୧୮୬୮ ପର୍ଯ୍ୟନ୍ତ ଏହି ସମ୍ବାଦପତ୍ର ପ୍ରକାଶ ପାଇଥିଲା । "ଉଦନ୍ତ ମାର୍ତ୍ତଣ୍ଡ"କୁ ପ୍ରଥମ ହିନ୍ଦୀ ସମ୍ବାଦପତ୍ର ଭାବରେ ବିବେଚନା କରାଯାଉଥିଲେ ମଧ୍ୟ ତାହା ଦୈନିକ ସମ୍ବାଦପତ୍ର ନଥିଲା ।

ମହାତ୍ମାଗାନ୍ଧୀ ୧୯୧୯ ଅକ୍ଟୋବର ମାସ ୮ ତାରିଖରେ "ୟଙ୍ଗ୍ ଇଣ୍ଡିଆ" ଏବଂ ୧୯୩୩ ଫେବୃୟାରୀ ମାସ ୧୧ ତାରିଖରେ "ହରିଜନ" ପତ୍ରିକା ପ୍ରକାଶ କରି ସାମାଜିକ ଜୀବନର ପ୍ରତ୍ୟେକ ଦିଗ ଉପରେ ଆଲୋକପାତ କରୁଥିଲେ । ତାଙ୍କ ନେତୃତ୍ୱରେ ସମ୍ବାଦପତ୍ରଗୁଡ଼ିକ ଜାତୀୟତାବାଦକୁ ପ୍ରାଧାନ୍ୟ ଦେଲେ । ଫଳରେ ସରକାର କଡ଼ା କଟକଣା ବ୍ୟବସ୍ଥା ଲାଗୁ କରିବାକୁ ଲାଗିଲେ ଓ ପରିଣାମ ସ୍ୱରୂପ ସମ୍ବାଦପତ୍ରଗୁଡ଼ିକ କ୍ରମଶଃ ଅଧିକ ବିଦ୍ରୋହୀ ହୋଇଉଠିଲେ ।

ଦିଲ୍ଲୀରୁ ପ୍ରକାଶିତ ଉର୍ଦ୍ଦୁ ଦୈନିକ "ଅର୍ଜ୍ଜୁନ" ଓ ଗଣେଶ ଶଙ୍କର ବିଦ୍ୟାର୍ଥୀଙ୍କର "ପ୍ରତାପ" ସ୍ୱାଧୀନତା ଆନ୍ଦୋଳନକାରୀମାନଙ୍କୁ ସାହାଯ୍ୟ କରୁଥିଲା । ସର୍ଦ୍ଦାର ଭଗତ ସିଂ ଉକ୍ତ ସମ୍ବାଦପତ୍ର ହପ୍ତରେ କିଛିକାଳ ପାଇଁ କାର୍ଯ୍ୟ କରିଥିଲେ ।

ଶିଶିର କୁମାର ଘୋଷଙ୍କ ଉଦ୍ୟମରେ ୧୮୬୬ରେ କଲିକତାରୁ "ଅମୃତ ବଜାର ପତ୍ରିକା" ପ୍ରକାଶ ପାଇଥିଲା । ପୁନେରୁ ତିଲକ ମହାରାଜା "କେଶରୀ" ସମ୍ବାଦପତ୍ର ପ୍ରକାଶ କଲେ ।

୧୯୧୦ରେ ବ୍ରିଟିଶ ସରକାର ଦମନମୂଳକ ପ୍ରେସ ଆଇନ ଜାରି କଲେ । ୧୯୧୯ ଶେଷ ସୁଦ୍ଧା ଏହି ଆଇନବଳରେ ୩୫୦ରୁ ଅଧିକ ସମ୍ବାଦପତ୍ରକୁ ଦଣ୍ଡିତ କରାଯାଇଥିଲା ।

ନାନା ଘାତ ପ୍ରତିଘାତ ମଧ୍ୟରେ ଗତିକରି ଭାରତୀୟ ସମ୍ବାଦପତ୍ର ସାଂପ୍ରତିକ ସ୍ଥିତିରେ ପହଞ୍ଚିଛି । ଷ୍ଟେଟ୍ସମ୍ୟାନ, ଟାଇମ୍ସ ଅଫ୍ ଇଣ୍ଡିଆ, ହିନ୍ଦୁସ୍ଥାନ ଟାଇମ୍ସ, ଇଣ୍ଡିଆନ ଏକ୍ସପ୍ରେସ, ଆନନ୍ଦ ବଜାର ପତ୍ରିକା,

ଟ୍ରିବ୍ୟୁନ, ମାଲୟାଲ ମନୋରମା, ଲୋକସତ୍ତା, ଯୁଗାନ୍ତର, କେରଳ କୌମୁଦୀ, ସନ୍ଦେଶ, ଦିନମଣି, ପଞ୍ଜାବ କେଶରୀ, ଦୈନିକ ବିଶ୍ୱାମିତ୍ର, ହିନ୍ଦୁ, ମହାରାଷ୍ଟ୍ର ଟାଇମ୍‌ସ, ନବଭାରତ ଟାଇମ୍‌ସ, ନବଭାରତ, ଟେଲିଗ୍ରାଫ, ସମାଜ ଓ ଅମୃତ ସନ୍ଦେଶ ପ୍ରଭୃତି ଜାତୀୟ ତଥା ବିଶ୍ୱସ୍ତରୀୟ ସମ୍ବାଦପତ୍ରମାନ ଇଂରାଜୀ ଏବଂ ଭାରତୀୟ ଭାଷାଗୁଡ଼ିକରେ ବିଭିନ୍ନ ପ୍ରାନ୍ତରୁ ପ୍ରକାଶିତ ହେଉଛି । ଏଥିସହ ବହୁ ଆକର୍ଷଣୀୟ ସଚିତ୍ର ଓ ରଙ୍ଗୀନ ସାମୟିକ ପତ୍ର-ପତ୍ରିକାମାନ ମଧ୍ୟ ପ୍ରକାଶିତ ହେଉଛି । ବ୍ଲିଜ ପ୍ରଭୃତି ସାପ୍ତାହିକ ମଧ୍ୟ ବିଶେଷ ଲୋକପ୍ରିୟତା ଅର୍ଜନ କରିଛି ।

ସ୍ୱାଧୀନୋତ୍ତର କାଳରେ ଭାରତୀୟ ସମ୍ବାଦପତ୍ରଗୁଡ଼ିକର ନୂତନ ଅଧ୍ୟାୟ ଆରମ୍ଭ ହେଲା । ସାମ୍ବାଦିକତା, ମିଶନ ପରିବର୍ତ୍ତେ ପ୍ରଫେସନ ଭାବରେ ଅଧିକ ପ୍ରଭାବିତ ହେଲା । ସମ୍ବାଦପତ୍ରଗୁଡ଼ିକର ପ୍ରସାର ସଂଖ୍ୟା ବୃଦ୍ଧି ସାଙ୍ଗକୁ ନୂତନ ମୁଦ୍ରଣ କୌଶଳ, ବ୍ୟାବସାୟିକ ଆଭିମୁଖ୍ୟ ଗୁରୁତ୍ୱ ଲାଭ କଲା ।

୧୯୪୭ ପୂର୍ବରୁ ଦେଶସେବା ମନୋଭାବ ନେଇ ବ୍ରିଟିଶ ରାଜୁତିର ବିରୋଧ କରୁଥିବା ସମ୍ବାଦପତ୍ରଗୁଡ଼ିକ ସ୍ୱାଧୀନୋତ୍ତର କାଳରେ କେବଳ ସମାଲୋଚନାତ୍ମକ ସମ୍ବାଦ ପ୍ରକାଶନ ଉପରେ ଗୁରୁତ୍ୱାରୋପ କରିଥିବାବେଳେ ଗଠନମୂଳକ ସମ୍ବାଦ ପ୍ରକାଶନ ପ୍ରତି ଯଥୋଚିତ ଧ୍ୟାନ ଦେଇନାହାନ୍ତି । ତେବେ ବିଭିନ୍ନ ଭାଷାରେ ପ୍ରକାଶିତ ହେଉଥିବା ସମ୍ବାଦପତ୍ରଗୁଡ଼ିକର କାର୍ଯ୍ୟ ପଦ୍ଧତି ଓ ଆଭିମୁଖ୍ୟ ସଂପର୍କରେ ଅନୁଶୀଳନ କରାଯିବାଭଳି କୌଣସି ବିଧିବଦ୍ଧ କେନ୍ଦ୍ରୀୟ ବ୍ୟବସ୍ଥା ସମ୍ଭବ ହୋଇପାରିନାହିଁ ।

ସାମାଜିକ ଦାୟିତ୍ୱ ତୁଲାଇବାରେ ଅନେକ ସମ୍ବାଦପତ୍ର ସଂଯମ ଅବଲମ୍ବନ କରିବାକୁ ଅସମର୍ଥ ହୋଇଛନ୍ତି । ଏହି ସମୟରେ ଭାରତୀୟ ସମ୍ବାଦପତ୍ରଗୁଡ଼ିକରେ ଉନ୍ମୁକ୍ତ ସାମାଜିକତା କିମ୍ବା ଅନୁସନ୍ଧାନମୂଳକ ସାମ୍ବାଦିକତା ନାମରେ ଏକ ନୂତନ ଆଭିମୁଖ୍ୟର ଆବିର୍ଭାବ ଘଟିଛି । ଏହାଦ୍ୱାରା ପାଶ୍ଚାତ୍ୟ ପ୍ରେସକୁ ଅନୁକରଣ କରାଯାଉଛି । ତେବେ ପାଶ୍ଚାତ୍ୟ ପ୍ରେସ ଦେଶର ସାଫଲ୍ୟ ଓ ଅଗ୍ରଗତିକୁ ଗୁରୁତ୍ୱ ଦେଉଥିବାବେଳେ ଭାରତୀୟ ସମ୍ବାଦପତ୍ରଗୁଡ଼ିକରେ ରାଜନୈତିକ କାର୍ଯ୍ୟକଳାପ ଅଥବା ରାଜନୀତିଜ୍ଞ-

ମାନଙ୍କ ଭାଷଣ ଉପରେ ପ୍ରାଧାନ୍ୟ ଦିଆଯାଉଛି । ଅନେକ ଉନ୍ନୟନମୂଳକ ସମ୍ବାଦଗୁଡ଼ିକ ପ୍ରାୟତଃ ସରକାରୀ ପ୍ରେସ୍‌ନୋଟ ଉପରେ ନିର୍ଭରଶୀଳ ବୋଲି କୁହାଯାଇପାରେ । ଅପର ପକ୍ଷରେ ସରକାରଙ୍କର ତଥ୍ୟ ଯୋଗାଣ କ୍ଷେତ୍ରରେ ଆବଶ୍ୟକୀୟ ବ୍ୟବସ୍ଥା ତଥା ତତ୍ପରତାର ଅଭାବରୁ ଅନେକ ସମୟରେ ବିଭ୍ରାନ୍ତିକର ସମ୍ବାଦମାନ ପ୍ରକାଶ ପାଇଯାଉଛି । ପୁନଶ୍ଚ ସରକାରୀ ଗୋପନୀୟତା ଆଇନ ସମ୍ବାଦପତ୍ର ଓ ସାମ୍ବାଦିକର କାର୍ଯ୍ୟପରିସରକୁ ସଙ୍କୁଚିତ କରୁଛି ।

ସ୍ୱାଧୀନୋତ୍ତର କାଳରେ ଭାରତରେ ଇଂରାଜୀ ସମ୍ବାଦପତ୍ର ତୁଳନାରେ ଭାରତୀୟ ଭାଷାର ସମ୍ବାଦପତ୍ରଗୁଡ଼ିକର ଅଧିକ ପ୍ରସାର ପରିଲକ୍ଷିତ ହୋଇଛି । ଭାରତୀୟ ଭାଷାକୁ ଶିକ୍ଷାର ମାଧ୍ୟମ ରୂପେ ଗ୍ରହଣ କରାଯିବା ଦ୍ୱାରା ଏହା ସମ୍ଭବ ହୋଇଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏକ ବଙ୍ଗଳା ଦୈନିକ "ଆନନ୍ଦବଜାର ପତ୍ରିକା" ଭାରତର ସର୍ବାଧିକ ପ୍ରସାରିତ ସମ୍ବାଦପତ୍ର । ଏକାଧିକ ସଂସ୍କରଣ ପ୍ରକାଶ କରୁଥିବା ସମ୍ବାଦପତ୍ରଗୁଡ଼ିକ ମଧ୍ୟରୁ ଇଂରାଜୀଭାଷାରେ ପ୍ରକାଶିତ ହେଉଥିବା "ଇଣ୍ଡିଆନ୍ ଏକ୍ସପ୍ରେସ" ସର୍ବାଧିକ ପ୍ରସାରିତ ।

ସମ୍ବାଦପତ୍ର ସଂଖ୍ୟା ବୃଦ୍ଧି ସାଙ୍ଗକୁ ସମ୍ବାଦସରବରାହ ସଂସ୍ଥାଗୁଡ଼ିକର ସଂଖ୍ୟା ଓ ଦାୟିତ୍ୱ ମଧ୍ୟ ବୃଦ୍ଧି ପାଇଲା । କୌଣସି ସମ୍ବାଦପତ୍ର ଦେଶର ପ୍ରତ୍ୟେକ ଅଞ୍ଚଳରେ ସାମ୍ବାଦିକ ନିଯୁକ୍ତ କରି ସମ୍ବାଦ ସଂଗ୍ରହ କରିବା ସମ୍ଭବପର ହୋଇପାରୁନଥିବାରୁ ସମ୍ବାଦସରବରାହ ସଂସ୍ଥାଗୁଡ଼ିକ ଉପରେ ନିର୍ଭରଶୀଳ ହେଲେ ।

ପୂର୍ବ ବର୍ଣ୍ଣିତ ରୟଟର୍, ହବାସ୍, ଉଲ୍‌ଫ ଓ ଆସୋସିଏଟେଡ ପ୍ରେସ ଏଜେନ୍‌ସି ମଧ୍ୟରେ ହୋଇଥିବା ରାଜିନାମା ଭିତ୍ତିରେ ରୟଟର ସଂସ୍ଥା ସମଗ୍ର ବ୍ରିଟିଶ ସାମ୍ରାଜ୍ୟରେ ସମ୍ବାଦ ସଂଗ୍ରହ ଦାୟିତ୍ୱ ପାଇଥିଲା ଓ ଆସୋସିଏଟେଡ଼ ପ୍ରେସ୍ ଅଫ୍ ଇଣ୍ଡିଆ ନାମକ ସମ୍ବାଦ ସରବରାହ ସଂସ୍ଥା ଗଠନ କରି ବ୍ରିଟିଶ ଶାସନାଧୀନ ଭାରତରେ ସମ୍ବାଦ ସଂଗ୍ରହ କରୁଥିଲା । ୧୯୪୮ରେ ଏହି ସଂସ୍ଥାର ମାଲିକାନା ଭାରତୀୟମାନଙ୍କ ହାତକୁ ଆସିଲା ଓ

ଏହାର ନାମ ରଖାଗଲା 'ପ୍ରେସ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ' । ସଂକ୍ଷେପରେ ପି. ଟି. ଆଇ. ସମ୍ପ୍ରତି ଦେଶର ଅଗ୍ରଣୀ ସମ୍ବାଦ ସରବରାହ ସଂସ୍ଥା ଭାବରେ ପ୍ରତିଷ୍ଠିତ ।

୧୯୫୯ରେ ୟୁନାଇଟେଡ ନ୍ୟୁଜ ଅଫ୍ ଇଣ୍ଡିଆ ସମ୍ବାଦ ସରବରାହ ସଂସ୍ଥା ଏକ କମ୍ପାନୀ ଭାବରେ ରେଜିଷ୍ଟ୍ରୀକୃତ ହୋଇଥିଲା ଓ ମାର୍ଚ୍ଚ ୧୯୬୧ରେ କାର୍ଯ୍ୟାରମ୍ଭ କରିଥିଲା । ୧୯୮୨ ମଇ ମାସରେ ଏହି ସଂସ୍ଥା ୟୁନିବାର୍ତ୍ତା ନାମରେ ହିନ୍ଦୀଭାଷାରେ ସମ୍ବାଦ ସରବରାହ କାର୍ଯ୍ୟ ଆରମ୍ଭ କଲା ଏବଂ ଗଲ୍‌ଫ ଦେଶସମୂହକୁ ମଧ୍ୟ ସମ୍ବାଦ ଯୋଗାଇବା ଆରମ୍ଭ କଲା ।

ସମ୍ବାଦ ସରବରାହ ସଂସ୍ଥାଗୁଡ଼ିକ ଟେଲିପ୍ରିଣ୍ଟର ମାଧ୍ୟମରେ ଦେଶ ତମାମ ବିଭିନ୍ନ ଭାଷାରେ ପ୍ରକାଶିତ ହେଉଥିବା ସମ୍ବାଦପତ୍ର, ଦୂରଦର୍ଶନ, ଆକାଶବାଣୀ ଓ ଅନ୍ୟାନ୍ୟ କାର୍ଯ୍ୟାଳୟଗୁଡ଼ିକୁ ସମ୍ବାଦ ଯୋଗାଇଥାନ୍ତି । ଦେଶରେ କାର୍ଯ୍ୟରତ ଅନ୍ୟଦୁଇଟି ମୁଖ୍ୟ ସମ୍ବାଦ ସରବରାହ ସଂସ୍ଥା ହେଲା ସମାଚାର ଭାରତୀ ଏବଂ ହିନ୍ଦୁସ୍ଥାନ ସମାଚାର । ଏହି ଚାରୋଟିଯାକ ସମ୍ବାଦ ସରବରାହ ସଂସ୍ଥାର ମିଶ୍ରଣରେ ୧୯୭୬ରେ ଗଠିତ ହୋଇଥିଲା "ସମାଚାର" ଓ ପୁଣି ୧୯୭୮ ଏପ୍ରିଲ ୧୪ ତାରିଖରୁ ଏହି ସଂସ୍ଥାଗୁଡ଼ିକ ପୃଥକ ଭାବରେ କାର୍ଯ୍ୟାରମ୍ଭ କରିଥିଲେ ।

ପ୍ରେସ ଟ୍ରଷ୍ଟ ଅଫ୍ ଇଣ୍ଡିଆ, ନ୍ୟୁଜ ସ୍କେନ ସର୍ଭିସ ଏବଂ ଓ୍ୱାୟୁାର ଫଟୋ ସର୍ଭିସ ପ୍ରଚଳନ କରି ଫଟୋ ସାମ୍ବାଦିକତା କ୍ଷେତ୍ରରେ ଏକ ନୂତନ ମାଇଲଖୁଣ୍ଟ ସ୍ଥାପନ କରିଛି । ୧୯୭୬ ଜୁଲାଇ ମାସ ୧୩ ତାରିଖରୁ ସଂକ୍ଷେପରେ ପୁଲ୍ ନାମରେ ପରିଚିତ ନନ୍ ଏଲାଏନ୍‌ଡ ନ୍ୟୁଜ ଏଜେନ୍‌ସିଜ ପୁଲ୍ ଗଠିତ ହୋଇଛି । ୧୯୭୬ ଜୁଲାଇ ମାସରେ ନୂଆଦିଲ୍ଲୀରେ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ରସମୂହର ସୂଚନାମନ୍ତ୍ରୀମାନଙ୍କର ସମ୍ମିଳନୀରେ ଗୃହୀତ ପ୍ରସ୍ତାବ ଅନୁସାରେ ଉପନିବେଶବାଦୀଙ୍କ ଅପପ୍ରଚାର ତଥା ସାଂପ୍ରତିକ ବିଶ୍ୱର ଉଦ୍‌ବେଗଜନକ ସୂଚନା ପରିସ୍ଥିତିର ମୁକାବିଲା ନିମନ୍ତେ ଏଭଳି ଏଜେନ୍‌ସି ଗଠନ ଉପରେ ଗୁରୁତ୍ୱାରୋପ କରାଯାଇଥିଲା । ଏହି ପୁଲ୍‌ର ନୂଆଦିଲ୍ଲୀ ନ୍ୟୁଜ ଡେସ୍କ ପି. ଟି. ଆଇ. ଦ୍ୱାରା ପରିଚାଳିତ ହୋଇଥାଏ ।

ଉପରୋକ୍ତ ସମ୍ବାଦ ସରବରାହ ସଂସ୍ଥାଗୁଡ଼ିକ ବ୍ୟତୀତ ଦେଶର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ସମ୍ବାଦପତ୍ର ସଂସ୍ଥା ତଥା ବ୍ୟକ୍ତିଗତ ଉଦ୍ୟମରେ

ଗ୍ଲେଷ୍ଟ ଅନେକ ସମ୍ବାଦ ସରବରାହ ସଂସ୍ଥା ଗଠିତ ହୋଇଛି । ତେବେ ସମ୍ବାଦ ସରବରାହ ସଂସ୍ଥାଗୁଡ଼ିକର କାର୍ଯ୍ୟକଳାପ ଅଧିକତର ସହରାଞ୍ଚଳ ପ୍ରତି କେନ୍ଦ୍ରୀଭୂତ । ସମ୍ବାଦପତ୍ରଗୁଡ଼ିକର ନିଜ ପ୍ରତିନିଧିମାନେ ମଧ୍ୟ ସହରାଞ୍ଚଳ ଓ ଗ୍ରାମାଞ୍ଚଳରେ କାର୍ଯ୍ୟରତ । ସଂପ୍ରତି ଆମ ଦେଶରେ ସମ୍ବାଦ ସଂଗ୍ରହ ବ୍ୟବସ୍ଥା ଏପରି ବ୍ୟାପକ ହୋଇଛି ଯେ, ଦେଶର ପ୍ରତ୍ୟେକ ଅଞ୍ଚଳର ସମ୍ବାଦ ଲୋକଲୋଚନକୁ ଆସିପାରୁଛି । ଅବଶ୍ୟ ଦେଶର ବିଶାଳ ଆୟତନ ଦୃଷ୍ଟିରୁ କେତେକ ସମ୍ବାଦ ବିଳମ୍ବରେ ସମ୍ବାଦପତ୍ରରେ ପ୍ରକାଶିତ ହେଉଛି । ସମ୍ବାଦ ସଂଗ୍ରହ ଓ ସରବରାହ କ୍ଷେତ୍ରରେ ଏକ ପ୍ରତିଯୋଗିତାମୂଳକ ମନୋଭାବ ପରିଲକ୍ଷିତ ହେଉଛି ଓ କ୍ରମ ବିକାଶଲାଭ କରୁଛି ।

ଟେଲିଫୋନ, ଟେଲିଗ୍ରାଫ୍, ଟେଲେକ୍ସ ଓ ଡ଼ାକସେବା ମାଧ୍ୟମରେ ସମ୍ବାଦ ଓ ସରବରାହ କାର୍ଯ୍ୟ ସମ୍ପନ୍ନ ହେଉଛି । "ହିନ୍ଦୁ" ସମ୍ବାଦପତ୍ର ଏହି ସବୁ ବ୍ୟବସ୍ଥା ସାଙ୍ଗକୁ ସମ୍ବାଦପତ୍ର ପ୍ରକାଶନରେ ଉପଗ୍ରହ ଯୋଗାଯୋଗ ବ୍ୟବସ୍ଥାର ଉପଯୋଗ କରୁଛି ।

ସ୍ୱାଧୀନତା ପ୍ରାପ୍ତିବେଳକୁ କେତୋଟି ସମ୍ବାଦପତ୍ର ଆମ ଦେଶରେ ପ୍ରକାଶିତ ହେଉଥିଲା । ସେଗୁଡ଼ିକ କେଉଁ କେଉଁ ଭାଷାରେ ପ୍ରକାଶିତ ହେଉ-ଥିଲା କିମ୍ବା ସେଗୁଡ଼ିକର ପ୍ରସାର ସଂଖ୍ୟା କେତେଥିଲା ତାହାର କୌଣସି ସଠିକ ହିସାବ ନାହିଁ ।

ପ୍ରେସ କମିଶନ ଗଠିତ ହେବା ପୂର୍ବରୁ ଆମ ଦେଶର ସମ୍ବାଦପତ୍ରଗୁଡ଼ିକ ସଂକ୍ରାନ୍ତ ପରିସଂଖ୍ୟାନ ନଥିଲା । ପେଶାଦାର ସାମ୍ବାଦିକମାନଙ୍କ ନିମନ୍ତେ କୌଣସି ଆଇନ ନଥିଲା । ସମ୍ବାଦପତ୍ରଗୁଡ଼ିକ ଉପରେ କୌଣସି ବ୍ୟାପକ ଓ ସୁଗଠିତ ନୀତି ନିୟମ ଲାଗୁ ହେଉନଥିଲା କିମ୍ବା ସମ୍ବାଦପତ୍ର ସଂସ୍ଥାଗୁଡ଼ିକ ମଧ୍ୟ କୌଣସି ନିଜସ୍ୱ ନିୟନ୍ତ୍ରଣ ବ୍ୟବସ୍ଥାନୁସାରେ ପରିଚାଳିତ ହେଉନଥିଲେ ।

୧୯୫୨ରେ ଭାରତୀୟ ପ୍ରେସର ଅବସ୍ଥା ଅନୁଧ୍ୟାନ ଲାଗି କେନ୍ଦ୍ର ସରକାର ତଦନ୍ତ କମିଶନ ଆଇନ-୧୯୫୨ ଅନୁସାରେ ପ୍ରଥମ ପ୍ରେସ କମିଶନ ଗଠନ କରିଥିଲେ । ୧୯୫୪ରେ ପ୍ରେସ କମିଶନ ତାଙ୍କର ରିପୋର୍ଟ କେନ୍ଦ୍ର ସରକାରଙ୍କ ନିକଟରେ ଉପସ୍ଥାପନ କରିଥିଲେ । କମିଶନଙ୍କ

ସୁପାରିଶକ୍ରମେ ସମ୍ବାଦପତ୍ରଗୁଡ଼ିକ ସଂକ୍ରାନ୍ତ ତଥ୍ୟ ସଂଗ୍ରହ କରି ବାର୍ଷିକ ବିବରଣୀ ପ୍ରକାଶନ ଲାଗି ପ୍ରେସ ରେଜିଷ୍ଟ୍ରାରଙ୍କୁ ନିଯୁକ୍ତ ଦିଆଗଲା । ଏଥିଲାଗି ପ୍ରେସ ଆଣ୍ଡ ରେଜିଷ୍ଟ୍ରେସନ ଅଫ୍ ବୁକ୍ସ (ଆମେଣ୍ଡମେଣ୍ଟ) ଆକ୍ଟ-୧୯୫୫ ପ୍ରଣୀତ ହେଲା । ସମ୍ବାଦପତ୍ର ଛପାକାଗଜ ବଣ୍ଟନ ଏବଂ ମୁଦ୍ରଣ ଯନ୍ତ୍ର ଆମଦାନି ଲାଗି ସୁପାରିଶ ପ୍ରଦାନ ମଧ୍ୟ ପ୍ରେସ୍ ରେଜିଷ୍ଟ୍ରାରଙ୍କର କାର୍ଯ୍ୟ ପରିସରଭୁକ୍ତ । ପ୍ରେସ୍ ରେଜିଷ୍ଟ୍ରାରଙ୍କ ଦ୍ୱାରା ପ୍ରସ୍ତୁତ ରିପୋର୍ଟ ପାର୍ଲାମେଣ୍ଟରେ ଉପସ୍ଥାପନ କରାଯାଇଥାଏ ।

ପ୍ରଥମ ପ୍ରେସ କମିଶନଙ୍କ ସୁପାରିଶ ଭିତ୍ତିରେ ସମ୍ବାଦପତ୍ରଗୁଡ଼ିକର ପ୍ରକାଶନକାଳ ନିର୍ଣ୍ଣିତ କରିବାଲାଗି ଆବଶ୍ୟକୀୟ ଆଇନଗତ ବ୍ୟବସ୍ଥା ଗ୍ରହଣ କରାଗଲା । ୧୯୫୬ରେ ପେଶାଦାର ସାମ୍ବାଦିକ ଆଇନ [Working Journalists (Conditions of Service) and Miscellaneous Provisions Act. 1955] ପ୍ରଣୀତ ହେଲା ତଥା ବୃତ୍ତିଗତ ସର୍ତ୍ତ ଆଦି ନିରୂପିତ ହେଲା । ଏ କ୍ଷେତ୍ରରେ ୧୯୪୭ ଶ୍ରମବିବାଦ ଆଇନ ମଧ୍ୟ ସହାୟକ ହେଲା । ତେବେ କମିଶନଙ୍କ ବହୁ ସୁପାରିଶକୁ କାର୍ଯ୍ୟକାରୀ କରାଯାଇ ପାରିଲା ନାହିଁ ।

ଭାରତୀୟ ପ୍ରେସ୍‌ର ବିକାଶ, ଗତି ଓ ପ୍ରକୃତି ସଂକ୍ରାନ୍ତ ଅନୁଧ୍ୟାନ ଲାଗି ୧୯୭୮ରେ ଦ୍ୱିତୀୟ ପ୍ରେସ କମିଶନ ଗଠିତ ହେଲା । ଦ୍ୱିତୀୟ ପ୍ରେସ୍ କମିଶନ ମୋଟ ୨୭୮ଟି ସୁପାରିଶ କରିଥିଲେ । ୧୯୮୨ ଏପ୍ରିଲ ମାସ ୩ ତାରିଖରେ ଏହି କମିଶନ ରିପୋର୍ଟ ପ୍ରଦାନ କରିଥିଲେ ।

ପ୍ରେସ୍ ସ୍ୱାଧୀନତାର ସୁରକ୍ଷା, ସମ୍ବାଦପତ୍ର ଓ ସମ୍ବାଦ ସରବରାହ ସଂସ୍ଥାର ମାନବୃଦ୍ଧି, ସମ୍ବାଦପତ୍ର ଦ୍ୱାରା ଓ ସମ୍ବାଦପତ୍ର ବିରୋଧରେ ଅଭିଯୋଗର ଶୁଣାଣି ଆଦି ନିମନ୍ତେ ପ୍ରେସ କାଉନସିଲ ଆଇନ-୧୯୭୮ ଅନୁସାରେ ପ୍ରଥମ ପ୍ରେସ କାଉନସିଲ ମଧ୍ୟ ଗଠନ କରାଗଲା । ଫେବ୍ରୁୟାରୀ ୧୯୮୨ରେ ପ୍ରଥମ ପ୍ରେସ କାଉନ୍‌ସିଲ ଗଠିତ ହୋଇଥିଲା । ୧୯୮୮ ସେପ୍ଟେମ୍ବର ୨୮ରେ ଓ ୧୯୯୦ ମାର୍ଚ୍ଚ ମାସରେ ପ୍ରେସ୍ କାଉନ୍‌ସିଲର ପୁନର୍ଗଠନ କରାଯାଇଥିଲା ।

ପ୍ରଥମ ପ୍ରେସ କମିଶନଙ୍କ ଦ୍ୱାରା ସଂଗୃହୀତ ତଥ୍ୟାବଳୀରୁ ଜଣାଯାଏ ଯେ ୧୯୫୨ ଶେଷସୁଦ୍ଧା ଆମ ଦେଶରେ ୩୩୦ଟି ଦୈନିକ ସମ୍ବାଦପତ୍ର, ୧୧୮୯ଟି ସାପ୍ତାହିକ ସମ୍ବାଦପତ୍ର ଏବଂ ୧୬୩୩ଟି ଅନ୍ୟାନ୍ୟ ସାମୟିକ ପତ୍ରପତ୍ରିକା ପ୍ରକାଶିତ ହେଉଥିଲା ।

"ଦି ପ୍ରେସ ଇନ୍ ଇଣ୍ଡିଆ—୧୯୮୦" ଅନୁସାରେ ୧୯୭୯ ଶେଷ ସୁଦ୍ଧା ଆମ ଦେଶରେ ଦୈନିକ ସମ୍ବାଦପତ୍ରଗୁଡ଼ିକର ସଂଖ୍ୟା ୧୧୭୩, ସାପ୍ତାହିକ ସମ୍ବାଦପତ୍ରଗୁଡ଼ିକର ସଂଖ୍ୟା ୫୦୨୩ ଏବଂ ଅନ୍ୟାନ୍ୟ ସାମୟିକ ପତ୍ରପତ୍ରିକାର ସଂଖ୍ୟା ୧୦୪୭୨କୁ ବୃଦ୍ଧି ପାଇଥିଲା । ଦୈନିକ ସମ୍ବାଦପତ୍ର-ଗୁଡ଼ିକର ପ୍ରସାରଣ ସଂଖ୍ୟା ୧୩୨ ଦଶମିକ ୨୯ ଲକ୍ଷକୁ ବୃଦ୍ଧି ପାଇଥିଲା ।

ଦୈନିକ ସମ୍ବାଦପତ୍ର ପ୍ରକାଶନରେ ସଂପ୍ରତି ଭାରତର ସ୍ଥାନ ଏସିଆ ମହାଦେଶରେ ଦ୍ୱିତୀୟ ଏବଂ ସମଗ୍ର ବିଶ୍ୱରେ ଚତୁର୍ଥ । ଯୁକ୍ତରାଷ୍ଟ୍ର ଆମେରିକା, ପଶ୍ଚିମ ଜର୍ମାନୀ ଏବଂ ଚୀନରେ ଭାରତ ତୁଳନାରେ ଅଧିକ ସମ୍ବାଦପତ୍ର ପ୍ରକାଶ ପାଏ ।

ମ୍ୟାକ୍ ବ୍ରାଇଡ଼ କମିଶନର ରିପୋର୍ଟ ଅନୁସାରେ ୧୯୭୫ରେ ଏସିଆ ମହାଦେଶରେ ହାରାହାରି ହଜାରେ ଲୋକଙ୍କ ପାଇଁ ୭୫ କପି ଦୈନିକ ସମ୍ବାଦପତ୍ର ପ୍ରକାଶିତ ହେଉଥିବାବେଳେ ଜାପାନରେ ସମସଂଖ୍ୟକ ଲୋକଙ୍କ ପାଇଁ ୫୦୦ କପି ଓ ଭାରତରେ ସେହି ସଂଖ୍ୟକ ଲୋକଙ୍କ ପାଇଁ ୧୫ ଦଶମିକ ୪କପି ପ୍ରକାଶିତ ହେଉଥିଲା । ଭାରତୀୟ ସମ୍ବାଦପତ୍ରର ବିକାଶଧାରାର ଗତି ମନ୍ଥର ବୋଲି କୁହାଯାଇପାରେ ।

ଅନ୍ୟାନ୍ୟ ଗଣମାଧ୍ୟମର ବିକାଶହାର ତୁଳନାରେ ସମ୍ବାଦପତ୍ରର ବିକାଶ ଆଶାନୁରୂପ ହୋଇପାରିନାହିଁ । ଦ୍ୱିତୀୟ ପ୍ରେସ୍ କମିଶନର ହିସାବ ଅନୁସାରେ ରେଡ଼ିଓ ସେଟ୍‌ର ସଂଖ୍ୟା ୨୧, ୪୧, ୭୫୪ରୁ ୨, ୦୬, ୭୪, ୧୧୩କୁ ବୃଦ୍ଧି ପାଇଥିବାବେଳେ ୧୯୬୬ରୁ ୭୭ ମଧ୍ୟରେ ଟେଲିଭିଜନ ସଂଖ୍ୟା ୪୧୭ରୁ ୧୧, ୫୧, ୩୧୧କୁ ବୃଦ୍ଧି ପାଇଛି । ଦୈନିକ ସମ୍ବାଦପତ୍ର ପ୍ରସାରଣ ସଂଖ୍ୟା ବୃଦ୍ଧିହାର ୧୪୮ ଦଶମିକ ୭୬ ରହିଥିବାବେଳେ ସାମୟିକ ପତ୍ରପତ୍ରିକାର ପ୍ରସାରଣ ବୃଦ୍ଧିହାର ୧୯୬୦ ରୁ ୧୯୭୯ ମଧ୍ୟରେ ୧୮୦ ଦଶମିକ ୯୪ ଥିଲା ।

ପୂର୍ବୋକ୍ତ ବିଭିନ୍ନ ଅଞ୍ଚଳରେ ସାକ୍ଷରତା ହାର ତୁଳନାରେ ସମ୍ବାଦପତ୍ରର ପ୍ରସାରଣ ଅସ୍ୱାଭାବିକ ହୋଇଥିବା ପରିଲକ୍ଷିତ ହୁଏ । ଚଣ୍ଡୀଗଡ଼ରେ ପ୍ରତି ହଜାରେ ଲୋକଙ୍କପାଇଁ ୧୬୯ ଦଶମିକ ୭୩ଟି କପି ପ୍ରସାରିତ ହେଉଥିବାବେଳେ ମିଜୋରାମ୍‌ରେ ଏହି ହାର ୧ ଦଶମିକ ୬୦ ଭାଗ ଥିଲା । ଲକ୍ଷାଦ୍ୱୀପ ଓ ମିନିକଏ ଦ୍ୱୀପପୁଞ୍ଜରେ ଏହି ହାର ଶତକଡ଼ା ଏକ ଭାଗରୁ କମ ଥିଲା । ଅର୍ଥାତ୍ ହଜାରେ ଲୋକଙ୍କ ପାଇଁ ହାରାହାରି ଗୋଟିଏ କପି ସମ୍ବାଦପତ୍ର ମଧ୍ୟ ପ୍ରସାରିତ ହେଉନଥିଲା ।

ପୂର୍ବୋକ୍ତ ଗୁଜୁରାଟି ଭାଷାର ସମ୍ବାଦପତ୍ର ହଜାରେ ଲୋକଙ୍କ ପାଇଁ ସର୍ବାଧିକ ୭୮ ଦଶମିକ ୭୨ କପି ପ୍ରସାରିତ ହେଉଥିବାବେଳେ ସେହି ସଂଖ୍ୟକ ଲୋକଙ୍କ ପାଇଁ ୧୬ ଦଶମିକ ୭୩ଟି କପି ଓଡ଼ିଆ ସମ୍ବାଦପତ୍ର ପ୍ରକାଶ ପାଉଥିଲା ।

ବୃହତ ଓ ମଧ୍ୟମ ଶ୍ରେଣୀସ୍ଥ ସମ୍ବାଦପତ୍ରଗୁଡ଼ିକର ଯଥେଷ୍ଟ ଅଗ୍ରଗତି ପରିଲକ୍ଷିତ ହୁଏ । ୫୦ ହଜାରରୁ ଊର୍ଦ୍ଧ୍ୱ ପ୍ରସାର ସଂଖ୍ୟା ଥିବା ସମ୍ବାଦପତ୍ରଗୁଡ଼ିକର ସଂଖ୍ୟା ୧୯୫୨ରେ ମାତ୍ର ୬ ଥିବା ସ୍ଥଳେ ୧୯୭୯ରେ ଏହାର ସଂଖ୍ୟା ୬୧ ଓ ୧୯୮୨ରେ ୧୭୬କୁ ବୃଦ୍ଧି ପାଇଥିଲା । ଏକାଧିକ ସଂସ୍କରଣ ପ୍ରକାଶ କରୁଥିବା ସମ୍ବାଦପତ୍ରଗୁଡ଼ିକର ମିଳିତ ପ୍ରସାରଣ ସଂଖ୍ୟା ଏହି ସମୟକାଳ ମଧ୍ୟରେ ପ୍ରାୟ ୧୨ ଗୁଣ ବୃଦ୍ଧି ପାଇଛି ।

ତିରିଶ ବର୍ଷ ମଧ୍ୟରେ ବୃହତ ସମ୍ବାଦପତ୍ରଗୁଡ଼ିକର ପ୍ରସାର ସଂଖ୍ୟା ୧୨ ଗୁଣ ବୃଦ୍ଧି ପାଇଥିବାସ୍ଥଳେ ମଧ୍ୟମ ସମ୍ବାଦପତ୍ରଗୁଡ଼ିକର ପ୍ରସାର ସଂଖ୍ୟା ଅଢ଼ାଇଗୁଣ ବୃଦ୍ଧିପାଇଛି ତଥା କ୍ଷୁଦ୍ର ସମ୍ବାଦପତ୍ରଗୁଡ଼ିକର ପ୍ରସାର ସଂଖ୍ୟା ଦ୍ୱିଗୁଣିତ ହୋଇଛି ।

୧୫ ହଜାର ପର୍ଯ୍ୟନ୍ତ ପ୍ରସାର ସଂଖ୍ୟା ଥିବା ସମ୍ବାଦପତ୍ରକୁ କ୍ଷୁଦ୍ର ସମ୍ବାଦପତ୍ର, ୧୫ ହଜାରରୁ ୫୦ ହଜାର ପର୍ଯ୍ୟନ୍ତ ପ୍ରସାର ସଂଖ୍ୟା ଥିବା ସମ୍ବାଦପତ୍ରକୁ ମଧ୍ୟମ ସମ୍ବାଦପତ୍ର ଓ ୫୦ ହଜାରରୁ ଅଧିକ ପ୍ରସାର ସଂଖ୍ୟା ଥିବା ସମ୍ବାଦପତ୍ରକୁ ବୃହତ୍ ସମ୍ବାଦପତ୍ର ଭାବରେ ଗଣାହେଉଛି ।

ଏହି ସମୟକାଳ ମଧ୍ୟରେ ସମ୍ବାଦପତ୍ରଗୁଡ଼ିକର ଯଥେଷ୍ଟ ମୂଲ୍ୟବୃଦ୍ଧି ଘଟିଛି । ବୃହତ ଓ ମଧ୍ୟମ ସମ୍ବାଦପତ୍ରଗୁଡ଼ିକର ମୂଲ୍ୟବୃଦ୍ଧି ସେମାନଙ୍କ ପ୍ରଚାରଣ ସଂଖ୍ୟାରେ ମଧ୍ୟ ତୁଳନାତ୍ମକ ଅଭିବୃଦ୍ଧି ଘଟିଛି । ତେବେ ଭାରତୀୟ ସମ୍ବାଦପତ୍ରଗୁଡ଼ିକ ଗ୍ରାମାଞ୍ଚଳର ଜନମାନସକୁ ଅଧିକତର ସ୍ପର୍ଶ କରିପାରି-ନାହିଁ ।

ପାଞ୍ଚଲକ୍ଷରୁ ଊର୍ଦ୍ଧ୍ୱ ଗ୍ରାମରେ ବସବାସ କରୁଥିବା ଶତକଡ଼ା ୭୬ ଭାଗ ଲୋକ ସମ୍ବାଦପତ୍ରର ବିକାଶଧାରାରେ ଉପକୃତ ହୋଇନାହାନ୍ତି । ସାକ୍ଷରତା ହାର ଶତକଡ଼ା ୪୦ରେ ପହଞ୍ଚିଥିଲେ ମଧ୍ୟ ଗ୍ରାମାଞ୍ଚଳରେ ସମ୍ବାଦ-ପତ୍ରର ଆଶାନୁରୂପ ପ୍ରସାର ହୋଇପାରୁ ନାହିଁ । କେବଳ ପ୍ରାୟ ୨୬୦୦ଟି ସହରରେ ସମ୍ବାଦପତ୍ରଗୁଡ଼ିକର ପ୍ରସାର ସଂଖ୍ୟା ବୃଦ୍ଧି ପାଇଛି ।

ତେଣୁ ପ୍ରେସ କମିଶନ ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଛନ୍ତି—
"The press in a country should be widely accessible to the people if it is to reflect their aspiration and problems. The Indian press is free but does not have a wide enough reach. It has an urban and middle class base which limits its contribution towards making the development process more widely participatory."

ଦେଖାଯାଇଛି ଯେ ଭାରତୀୟ ସମ୍ବାଦପତ୍ର ଶିଳ୍ପ ଅନ୍ୟାନ୍ୟ ଶିଳ୍ପର ମାଲିକାନାରେ ପରିଚାଳିତ । ୧୯୭୭ରେ ୯୮ଟି ସଂସ୍ଥାଦ୍ୱାରା ପ୍ରକାଶିତ ୧୫୩ଟି ଦୈନିକ ସମ୍ବାଦପତ୍ରର ମିଳିତପ୍ରସାର ସଂଖ୍ୟା ୭୫ ଲକ୍ଷ ୧୦ ହଜାର ଥିଲା । ଏହା ଅନ୍ୟ ସମସ୍ତ ଦୈନିକ ସମ୍ବାଦପତ୍ରର ମିଳିତ ପ୍ରସାର ସଂଖ୍ୟାର ଶତକଡ଼ା ୭୦ ଦଶମିକ ୩୭ ଭାଗ ଥିଲା ।

ଭାରତୀୟ ସମ୍ବାଦପତ୍ର ଅର୍ଥନୀତି ସମ୍ବନ୍ଧୀୟ ତଥ୍ୟାନୁସନ୍ଧାନ କମିଟିର ତଥ୍ୟ ଏବଂ ଦ୍ୱିତୀୟ ବ୍ରିଟିଶ ପ୍ରେସ କମିଶନ୍‌ର ରିପୋର୍ଟ ବିଷୟରକୁ ନେଇ

ଦ୍ୱିତୀୟ ପ୍ରେସ କମିଶନ ସମ୍ବାଦପତ୍ର ଶିଳ୍ପକୁ ଅନ୍ୟ ସଂସ୍ଥାର ନିୟନ୍ତ୍ରଣରୁ ମୁକ୍ତ କରିବାଲାଗି ପନ୍ଥା ନିରୂପଣ କରିଛନ୍ତି । ୧୯୪୪ ଅଗଷ୍ଟ ମାସ ୨୬ ତାରିଖରେ ଫ୍ରାନ୍ସ ସରକାରଙ୍କ ଦ୍ୱାରା ଜାରି କରାଯାଇଥିବା ଅଧ୍ୟାଦେଶର ଧାରାଗୁଡ଼ିକ ଉପରେ ମଧ୍ୟ କମିଶନ ନିର୍ଭର କରିଛନ୍ତି ।

ସମ୍ବାଦପତ୍ରଗୁଡ଼ିକରେ ବ୍ୟବସାୟିକ ବିଜ୍ଞାପନ ପ୍ରକାଶନ ଦ୍ୱାରା କ୍ରମେ ବୃଦ୍ଧି ପାଉଛି । ସରକାରୀ ବିଜ୍ଞାପନ ମଧ୍ୟ ବହୁଳ ଭାବରେ ପ୍ରକାଶିତ ହେଉଛି । କେବଳ ବିଜ୍ଞାପନ-ଲବ୍ଧ ଧନରୁ ସମ୍ବାଦପତ୍ର ପରିଚାଳନା ଏକ କାଠିକର ପାଠରେ ପରିଣତ ହୋଇଛି । ଫଳରେ "ଧନାକେଣ କଳାକର", "ବୃଦ୍ଧମାନେ ଯୁବକ ହୁଅ" ପ୍ରଭୃତି ବିଜ୍ଞାପନ ଅବାଧରେ ପ୍ରକାଶିତ ହେଉଛି । ଫ୍ରିଡ୍ ଏଲେନ୍ କହିଥିଲେ—"Advertising is 85% confusion and 15% commission."

ଭାରତରେ ସମ୍ବାଦପତ୍ରଗୁଡ଼ିକ ମୁଖ୍ୟତଃ ସରକାର, ଘରୋଇ ଉଦ୍ୟୋଗ, ଜଏଣ୍ଟଷ୍ଟକ କମ୍ପାନି, ବ୍ୟବସାୟିକ ପ୍ରତିଷ୍ଠାନ, ଟ୍ରଷ୍ଟ, ସମବାୟ ସମିତି, ଶିକ୍ଷାନୁଷ୍ଠାନ, ଆନ୍ତର୍ଜାତିକ ସଂସ୍ଥା ତଥା ରାଜନୈତିକ ଦଳ ଓ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ପ୍ରକାଶିତ ହୋଇଥାଏ ।

ଏକ ହିସାବରୁ ଜଣାଯାଇଛି ଯେ ଭାରତୀୟ ସମ୍ବାଦପତ୍ର ଓ ପତ୍ର-ପତ୍ରିକାର ମିଳିତ ପ୍ରସାରଣ ସଂଖ୍ୟା ୧୯୭୬ରେ ୩୪୦ ଦଶମିକ ୭୫ ଲକ୍ଷ, ୧୯୭୭ରେ ୩୭୪ ଦଶମିକ ୩୭ ଲକ୍ଷ, ୧୯୮୧ରେ ୫, ୧୧, ୦୨, ୦୦୦ ଓ ୧୯୮୨ରେ ୫,୦୦, ୯୪,୦୦୦ ଥିଲା । ୧୯୮୨ରେ ପୂର୍ବବର୍ଷ ତୁଳନାରେ ଶତକଡ଼ା ୨ ଭାଗ ପ୍ରସାର ସଂଖ୍ୟା ହ୍ରାସ ପାଇଥିଲା । ଏଠାରେ ଉଲ୍ଲେଖ-ଯୋଗ୍ୟ ଯେ ଏହି ସମୟ ମଧ୍ୟରେ କେବଳ ସାମୟିକ ପତ୍ରପତ୍ରିକାର ପ୍ରସାର ସଂଖ୍ୟା ହ୍ରାସ ପାଇଥିବାବେଳେ ଦୈନିକ ସମ୍ବାଦପତ୍ରଗୁଡ଼ିକର ପ୍ରସାର ସଂଖ୍ୟା ବୃଦ୍ଧି ପାଇଥିଲା ।

୧୯୮୨ ବେଳକୁ ମୋଟ ୮୫ଟି ଭାଷାରେ ସମ୍ବାଦପତ୍ରମାନ ପ୍ରକାଶିତ ହେଉଥିଲା ଓ ହିନ୍ଦୀ ଭାଷାରେ ସର୍ବାଧିକ ୫୬୫୫ଟି ତଥା ଇଂରାଜୀ ଭାଷାରେ ୩୬୮୯ଟି ସମ୍ବାଦପତ୍ର ପ୍ରକାଶିତ ହେଉଥିଲା । ଏହି ସମୟରେ ୧୭୬ଟି

ବୃହତ, ୩୭୪ଟି ମଧ୍ୟମ ଏବଂ ୬୫୪୯ଟି କ୍ଷୁଦ୍ର ସମ୍ବାଦପତ୍ର ପ୍ରକାଶ ପାଉଥିଲା ।

ଦେଶରେ ସମ୍ବାଦପତ୍ରଗୁଡ଼ିକର ସଂଖ୍ୟାବୃଦ୍ଧି ସାଙ୍ଗକୁ ଗୁଣାତ୍ମକ ପରିବର୍ତ୍ତନ ମଧ୍ୟ ଘଟିଛି ତଥା ସାମାଜିକ ପରିବର୍ତ୍ତନ କ୍ରମରେ ସମ୍ବାଦପତ୍ରଗୁଡ଼ିକ ମଧ୍ୟ ସାମିଲ ହୋଇଛନ୍ତି । ସମ୍ବାଦପତ୍ର ଛପା କାଗଜର ଅତ୍ୟଧିକ ମୂଲ୍ୟବୃଦ୍ଧି ହେତୁ କାରଣରୁ ସମ୍ବାଦପତ୍ରଗୁଡ଼ିକର ସମସ୍ୟା ମଧ୍ୟ ବୃଦ୍ଧି ପାଇଛି । ସମ୍ବାଦପତ୍ରଗୁଡ଼ିକର ପ୍ରକାଶନ ବ୍ୟୟ ବହୁଗୁଣିତ ହୋଇଛି ।

□□□

# ଓଡ଼ିଶାରେ ସମ୍ବାଦପତ୍ର ପ୍ରକାଶନର ଧାରା

ପାଶ୍ଚାତ୍ୟ ସଂସ୍କୃତିର ବ୍ୟାପକ ପ୍ରସାରର ପରିଣତି ସ୍ୱରୂପ ୧୮୩୭ ରେ ଖ୍ରୀଷ୍ଟିଆନ ମିଶନାରୀ ସଂସ୍ଥା ଦ୍ୱାରା କଟକରେ ଏକ ମୁଦ୍ରଣାଳୟ "ଦ କଟକ ମିଶନ ପ୍ରେସ" ପ୍ରତିଷ୍ଠିତ ହୋଇଥିଲା । ଓଡ଼ିଶାର ବୌଦ୍ଧିକ ଚେତନାର ବିକାଶ କ୍ଷେତ୍ରରେ ଏହି ମୁଦ୍ରଣାଳୟର ପ୍ରଭାବ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ୧୮୨୨ରୁ ମିଶନାରୀମାନେ ଓଡ଼ିଶାରେ ଇଂରାଜୀ ଶିକ୍ଷାର ତଥା ଖ୍ରୀଷ୍ଟିଆନ ଧର୍ମର ପ୍ରସାର ନିମନ୍ତେ କାର୍ଯ୍ୟ କରୁଥିଲେ ।

୧୮୬୬ରେ ନଅଙ୍କ ଦୁର୍ଭିକ୍ଷ ପଡ଼ିଲା । ବହୁ ଲୋକ ଅନାହାରରେ ମୃତ୍ୟୁମୁଖରେ ପଡ଼ିଲେ । ଏହି ପରିସ୍ଥିତିକୁ ସମ୍ଭାଳିବା ଦିଗରେ ବ୍ରିଟିଶ ସରକାର ସମ୍ପୂର୍ଣ୍ଣ ଭାବରେ ଅସମର୍ଥ ହେଲା । ଏହି ସମୟରେ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶାକୁ ଲୋକଲୋଚନକୁ ଆଣି ଜନଚେତନାର ବିକାଶ ସାଙ୍ଗକୁ ସରକାରଙ୍କ ନିକଟରେ ଦାବୀ ଉପସ୍ଥାପନ ଲାଗି ଏକ ସମ୍ବାଦପତ୍ର ପ୍ରକାଶନର ଆବଶ୍ୟକତା ଅନୁଭୂତ ହେଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ବାସ୍ତବ ସମସ୍ୟା ଉପସ୍ଥାପନ ଲାଗି କର୍ମବୀର ଗୌରୀଶଙ୍କର ରାୟ ପ୍ରଥମ ଓଡ଼ିଆ ସମ୍ବାଦପତ୍ର "ଉତ୍କଳ ଦୀପିକା" ପ୍ରକାଶ କରିଥିଲେ । ସମୟର କଷଟି ପଥରରେ ପରୀକ୍ଷିତ ହୋଇ ଏହି ସମ୍ବାଦପତ୍ର ୧୮୬୬ରୁ ୧୯୩୪ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା । ଏହି ସମୟ ଥିଲା ଓଡ଼ିଶା ପକ୍ଷରେ ସଙ୍କଟର ସମୟ । ଓଡ଼ିଆ ଭାଷାର ସୁରକ୍ଷା ଦିଗରେ ମଧ୍ୟ ବହୁବିଧ ଉଦ୍ୟମ ହୋଇଥିଲା ଓ ଅବଶେଷରେ ୧୯୩୬ ଏପ୍ରିଲ ପହିଲାରୁ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହୋଇଥିଲା । ଏହି ସମୟରେ ସମ୍ବାଦପତ୍ର ତଥା ପତ୍ରପତ୍ରିକାର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପୂର୍ବରୁ, ୧୮୬୧ରେ ବାଲେଶ୍ୱରରୁ "ବୋଧଦାୟିନୀ" ପତ୍ରିକା ପ୍ରକାଶିତ ହୋଇଥିଲା । ଉତ୍କଳ ଦୀପିକା କଟକ ପ୍ରିଣ୍ଟିଂ କମ୍ପାନୀରୁ ସାପ୍ତାହିକ ଭାବରେ ପ୍ରକାଶ ପାଇଥିଲା ।

୧୮୮୫ରେ ଭାରତୀୟ ଜାତୀୟ କଂଗ୍ରେସ ଗଠିତ ହୋଇଥିଲା ଉମେଶ ଚନ୍ଦ୍ର ବାନାର୍ଜୀଙ୍କ ଅଧ୍ୟକ୍ଷତାରେ। ସର୍ବଭାରତୀୟ ସ୍ତରରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଦୟନୀୟ ସ୍ଥିତି ଓ ସମସ୍ୟାବଳୀ ଉପସ୍ଥାପନ ଲାଗି କର୍ମବୀର ଗୌରିଶଙ୍କର ରାୟ ଏବଂ ଉତ୍କଳ ଗୌରବ ମଧୁସୂଦନ ଦାସ ଜାତୀୟ କଂଗ୍ରେସର ଦ୍ୱିତୀୟ ଅଧିବେଶନରେ ଯୋଗଦାନ କରିଥିଲେ। ଏହାପରେ ସମ୍ବଲପୁରରୁ ୧୮୮୯ରେ ସମ୍ବଲପୁର ହିତୈଷିଣୀ ପ୍ରକାଶ ପାଇଥିଲା।

ଏ କଟକ ମିସନ ପ୍ରେସ ପ୍ରତିଷ୍ଠିତ ହେବାପରେ ଓଡ଼ିଶାରେ ମୁଦ୍ରଣାଳୟ ପ୍ରତିଷ୍ଠା ତଥା ମୁଦ୍ରିତ ପୁସ୍ତକ ଓ ଅନ୍ୟାନ୍ୟ ସାମଗ୍ରୀ ପ୍ରତି ଜନସାଧାରଣଙ୍କର ଆଦର ବଢ଼ିଥିଲା।

ନଅଙ୍କ ଦୁର୍ଭିକ୍ଷ ସମୟରେ ଓଡ଼ିଶା ଡ଼ିଭିଜନର ତତ୍କାଳୀନ କମିଶନର ଟି.ଇ. ରେଭେନ୍‌ସା ତାଙ୍କର ସିରସ୍ତାଦାର ବିଚିତ୍ରାନନ୍ଦ ଦାସଙ୍କୁ ପ୍ରବର୍ତ୍ତାଇ କଟକ ପ୍ରିଣ୍ଟିଂ ପ୍ରେସ ପ୍ରତିଷ୍ଠା କରାଇଥିଲେ ଓ ସରକାରଙ୍କୁ ଗଠନମୂଳକ ଭାବରେ ସମାଲୋଚନା କରିବା ନିମନ୍ତେ ଏକ ସମ୍ବାଦପତ୍ର ପ୍ରକାଶନ ଲାଗି ପରାମର୍ଶ ଦେଇଥିଲେ।

୧୮୬୮ରେ ବ୍ୟାସକବି ଫକୀର ମୋହନ ସେନାପତି ବାଲେଶ୍ୱରରେ ଉତ୍କଳ ପ୍ରିଣ୍ଟିଂ ପ୍ରେସ୍ ପ୍ରତିଷ୍ଠା କରି "ସମ୍ବାଦ ବାହିକା" ପ୍ରକାଶ କଲେ। ରାଜା ବୈକୁଣ୍ଠନାଥ ଦେ ମଧ୍ୟ ଏକ ମୁଦ୍ରଣାଳୟ ପ୍ରତିଷ୍ଠା କରି "ଉତ୍କଳ ଦର୍ପଣ" ପ୍ରକାଶ କରିଥିଲେ।

ଫକୀର ମୋହନ ସେନାପତି ଓ ବୈକୁଣ୍ଠନାଥ ଦେ ସମ୍ବାଦପତ୍ର ମାଧ୍ୟମରେ ଓଡ଼ିଆ ଭାଷାଭାଷୀ ଲୋକଙ୍କୁ ଆଲୋକର ପଥ ଦେଖାଇଥିଲେ।

ପରେ ପରେ ଓଡ଼ିଶାରେ ଅନେକ ମୁଦ୍ରଣାଳୟ ପ୍ରତିଷ୍ଠିତ ହୋଇ-ଥିଲା। ମୟୂରଭଞ୍ଜ ପ୍ରେସ (୧୮୭୯), ବାମଣ୍ଡା ପ୍ରେସ (୧୮୮୫), ଜଗନ୍ନାଥ ବଲ୍ଲଭ ପ୍ରେସ (୧୮୮୭), ଅରୁଣୋଦୟ (୧୮୯୩), ରାୟ ପ୍ରେସ (୧୮୯୪), ବିନୋଦ ପ୍ରେସ (୧୮୯୭), ଉତ୍କଳ ଦର୍ପଣ ପ୍ରେସ (୧୯୦୨) ପ୍ରେସ୍ ଜର

ପ୍ରେସ ଓ ସାଧନା ପ୍ରେସ ପ୍ରଭୃତି ମୁଦ୍ରଣାଳୟ ପ୍ରତିଷ୍ଠିତ ହେବାପରେ ବହୁ ପତ୍ରପତ୍ରିକା ପ୍ରକାଶ ପାଇ ଓଡ଼ିଶାର କଳା ସାହିତ୍ୟ ଓ ସଂସ୍କୃତିକୁ ବୃଦ୍ଧିମନ୍ତ କରିଥିଲା ।

କଟକ ଷ୍ଟାଣ୍ଡାର୍ଡ଼, ଆର୍ଗ୍ୟୁମେଣ୍ଟ, ଓଡ଼ିଶା ପାଟ୍ରିଅଟ୍ (୧୮୬୮), ଉତ୍କଳ ହିତୈଷିଣୀ, ଉତ୍କଳ ଶୁଭଙ୍କରୀ (୧୮୬୯), ମୟୂରଭଞ୍ଜ ପାକ୍ଷିକ ପତ୍ରିକା (୧୮୭୯), ସ୍ୱଦେଶୀ (୧୮୮୦), ସମ୍ବଲପୁର ହିତୈଷିଣୀ (୧୮୯୦), ଉତ୍କଳ ପ୍ରଭା (୧୮୯୧), ଇନ୍ଦ୍ରଧନୁ (୧୮୯୪), ଉତ୍କଳ ବନ୍ଧୁ (୧୮୯୬), ପ୍ରଭାତତାରା (୧୮୯୬), ଉତ୍କଳ ସାହିତ୍ୟ (୧୮୯୭), ଓଡ଼ିଶା ଟାଇମ୍ସ (୧୮୯୮), ଗଞ୍ଜାମ ଓଡ଼ିଆ ହିତବାଦିନୀ (୧୮୯୯), ପ୍ରଜାବନ୍ଧୁ (୧୯୦୩), ଉତ୍କଳ ସେବକ, ମନୋରମା, ଷ୍ଟାର ଅଫ୍ ଉତ୍କଳ (୧୯୦୫), ସନାତନ ଧର୍ମ (୧୯୦୬), ଗଞ୍ଜାମ ନଉଜ (୧୯୦୭), ସମାଜ ମିତ୍ର, ସତ୍ୟ ସମାଚାର, ନବ୍ୟ ଭାରତ, ନ ଓଡ଼ିଆ (୧୯୧୭), ଖ୍ରୀଷ୍ଟ ଶରଣପ୍ୟା, ନବଯୁଗ (୧୯୧୯) ତଥା ସାଧନା ଏବଂ ସେବା (୧୯୨୧) ପ୍ରଭୃତି ପ୍ରକାଶ ପାଇ ଓଡ଼ିଶାରେ ପ୍ରକାଶନ ପର୍ବର ବିକାଶ ଦିଗରେ ସହାୟକ ହୋଇଥିଲା ।

ଏହି କାଳରେ ମିସନାରୀମାନେ ମଧ୍ୟ ସମ୍ବାଦପତ୍ର ଓ ପତ୍ରପତ୍ରିକା ମାଧ୍ୟମରେ ଜନମତକୁ ବିଭ୍ରାନ୍ତ କରିବାଲାଗି ଉଦ୍ୟମ କରିଥିଲେ । ଏହାର ପରିଣତି ସ୍ୱରୂପ ରେଭରେଣ୍ଡ ସି: ଲସେଙ୍କ ସମ୍ପାଦନାରେ ଜ୍ଞାନାରୁଣ (୧୮୪୮), ପ୍ରବୋଧ ଚନ୍ଦ୍ରିକା (୧୮୫୬) ଏବଂ ଅରୁଣୋଦୟ (୧୮୬୧) ମିସନାରୀମାନଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । କିନ୍ତୁ ଜନ ସହଯୋଗ, ସମର୍ଥନ ଓ ଆଦର ଅଭାବରୁ ଏଗୁଡ଼ିକ ସ୍ୱତଃ ବନ୍ଦ ହୋଇଯାଇଥିଲା ।

୧୯୧୪ ମହାବିପ୍ଲବ ସନ୍ଧାନ୍ତରେ ବ୍ରହ୍ମପୁରରୁ ଆତ୍ମପ୍ରକାଶ କରିଥିଲା ଦୈନିକ "ଆଶା" । ଏହା ୧୯୨୮ରେ ଦୈନିକ ସମ୍ବାଦପତ୍ରରେ ପରିଣତ ହୋଇଥିଲା । "ଉତ୍କଳ ଦୀପିକା" ପରେ "ଦୈନିକ ଆଶା" ସୁପ୍ରତିଷ୍ଠିତ ହୋଇଥିଲା । ଏହାର ପ୍ରତିଷ୍ଠାତା ସମ୍ପାଦକ ଶଶୀଭୂଷଣ ରଥଙ୍କ ପ୍ରଗାଢ଼ ଉଦ୍ୟମ ପ୍ରତି ଆକୃଷ୍ଟ ହୋଇ ଉତ୍କଳମଣି ଗୋପବନ୍ଧୁ ଦାସ ଓ ପଣ୍ଡିତ ନୀଳକଣ୍ଠ ସାପ୍ତାହିକ ଆଶାର ସମ୍ପାଦନା କାର୍ଯ୍ୟରେ ସମୟ ସମୟରେ

ସହଯୋଗ କରୁଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର କାଳରେ ଆଶାରେ ପ୍ରକାଶିତ ସମ୍ବାଦ ତଥା ଅଗ୍ରଲେଖ ଗୁଡ଼ିକ ଗାନ୍ଧିଜୀଙ୍କ ଆଦର୍ଶର ପ୍ରସାର ଦିଗରେ ସହାୟକ ହୋଇଥିଲା ଓ ଜଣେ ସତ୍ୟାଗ୍ରହୀ ଭାବରେ ସୁପରିଚିତ ଶଶୀଭୂଷଣ ରଥ ବ୍ରିଟିଶ ସରକାରଙ୍କ ଦ୍ୱାରା ବନ୍ଦୀ ହେଲେ । ଏହି କାଳରେ ସରକାରଙ୍କ ଦ୍ୱାରା "ଦୈନିକ ଆଶା" ଉପରେ ବହୁ କଟକଣା ଲାଗୁ କରା-ଯାଇଥିଲା । ତେଣୁ ତାହାର ପ୍ରତିବାଦ ସ୍ୱରୂପ ସମ୍ପାଦକୀୟ ସ୍ତମ୍ଭ ବର୍ଜନ କରାଯାଇଥିଲା ଓ ସମ୍ପାଦକୀୟ ନିମନ୍ତେ ଉଦ୍ଦିଷ୍ଟ ସ୍ଥାନରେ ବଜାରଦର ପ୍ରଭୃତି ପ୍ରକାଶ ପାଉଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଦୈନିକ ଆଶାର ସହ-ଯୋଗୀ ସମ୍ବାଦପତ୍ର ଭାବରେ କେ. ଏନ୍. ଆଚାରୀଙ୍କ ସମ୍ପାଦନାରେ ପ୍ରକାଶ ପାଉଥିଲା "ନବ ଓଡ଼ିଶା ।" ପରେ ଉଭୟ ସମ୍ବାଦପତ୍ରର ପ୍ରକାଶନ ସ୍ଥଳ କଟକକୁ ସ୍ଥାନାନ୍ତରିତ ହୋଇଥିଲା । ଶଶୀଭୂଷଣଙ୍କ ଏକମାତ୍ର କନ୍ୟାର ନାମାନୁସାରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ସମ୍ବାଦପତ୍ରର ନାମ ରଖାଯାଇଥିଲା "ଆଶା ।" ଦୀର୍ଘକାଳ ପର୍ଯ୍ୟନ୍ତ ବନ୍ଦ୍ ରହିବା ପରେ ଦୈନିକ ଆଶା ପୁନରାୟ ବ୍ରହ୍ମପୁରରୁ ଶଶୀଭୂଷଣଙ୍କ ଅନ୍ୟତମ ଘନିଷ୍ଠ ସହଯୋଗୀ ଶ୍ରୀହର୍ଷ ମିଶ୍ରଙ୍କ ସମ୍ପାଦନାରେ ପ୍ରକାଶ ପାଇଲା ।

୧୯୧୯ ଅକ୍ଟୋବର ମାସ ୪ ତାରିଖରେ ଉତ୍କଳମଣି ଗୋପବନ୍ଧୁ ଦାସ ସତ୍ୟବାଦୀରୁ "ସମାଜ" ସମ୍ବାଦପତ୍ରର ପ୍ରକାଶନ ଆରମ୍ଭ କରିଥିଲେ । ଚାରିପୃଷ୍ଠାର ଟାବଲଏଡ ସାଇଜର ଏହି ସମ୍ବାଦପତ୍ରର ପ୍ରତିଖଣ୍ଡର ମୂଲ୍ୟଥିଲା ଦୁଇପଇସା ଓ ବାର୍ଷିକ ଦେୟ ଥିଲା ଦେଢ଼ଟଙ୍କା ମାତ୍ର । "ସମାଜ" ପ୍ରକାଶନ ପରେ ଓଡ଼ିଆ ସମ୍ବାଦପତ୍ର ଓ ସାମ୍ବାଦିକତାର ଏକ ନୂତନ ପର୍ବ ଆରମ୍ଭ ହେଲା ।

ଏହି ସମୟରେ ସମ୍ବାଦପତ୍ର ପ୍ରକାଶନ କ୍ଷେତ୍ରରେ ସମଗ୍ର ବିଶ୍ୱରେ ବ୍ୟାପକ ବିକାଶ ଘଟିସାରିଥାଏ । ୧୮୬୮ ବେଳକୁ "ଲଣ୍ଡନ ଟାଇମ୍ସ" ସମ୍ବାଦପତ୍ର ରୋଟାରୀ ମୁଦ୍ରା ଯନ୍ତ୍ରରେ ମୁଦ୍ରିତ ହେଉଥିଲା ବୋଲି ଜଣାଯାଏ । ସମକାଳରେ ଗଣ୍ଡାର ଦୁର୍ଭିକ୍ଷ ମଧ୍ୟରେ ଓଡ଼ିଶାରେ ସମ୍ବାଦପତ୍ରର ଉଦ୍‌ଯୋଗ ପର୍ବର ଅପୂର୍ବାରମ୍ଭ ଘଟିଥିଲା ।

ଉତ୍କଳମଣି ଗୋପବନ୍ଧୁ "ସମାଜ" ସମ୍ବାଦପତ୍ର ପ୍ରକାଶ କରିବା ପୂର୍ବରୁ "ସତ୍ୟବାଦୀ" ନାମକ ଏକ ସାହିତ୍ୟ ପତ୍ରିକା ପ୍ରକାଶ କରିଥିଲେ ।

ଏହା ଓଡ଼ିଆ ସାହିତ୍ୟର ବିକାଶରେ ସହାୟକ ହୋଇଥିଲା । ୧୯୩୧ରେ "ସମାଜ" ସାପ୍ତାହିକରୁ ଦୈନିକ ସମ୍ବାଦ ପତ୍ରରେ ପରିଣତ ହୋଇଥିଲା ଓ ପରେ ଠକ୍କୁର ରାଧାନାଥ ରଥଙ୍କ ସମ୍ପାଦନାରେ ଓଡ଼ିଶାର ସର୍ବବୃହତ୍ ତଥା ବହୁଳ ପ୍ରସାରିତ ସମ୍ବାଦପତ୍ର ଭାବରେ ସୁପ୍ରତିଷ୍ଠିତ ହେଲା । ଉତ୍କଳ-ମଣିଙ୍କ ଉଇଲ ଅନୁସାରେ ଲାଲା ଲଜପତି ରାୟଙ୍କ ପ୍ରତିଷ୍ଠିତ ଲୋକସେବକ ମଣ୍ଡଳ ଉପରେ ସମାଜର ମାଲିକାନା ସ୍ୱତ୍ୱ ନ୍ୟସ୍ତ ହୋଇଛି ।

"ସମାଜ" ପ୍ରକାଶନ ବେଳକୁ ସତ୍ୟବାଦୀ ଜାତୀୟ ବନବିଦ୍ୟାଳୟ ପ୍ରତିଷ୍ଠିତ ହୋଇସାରିଥିଲା । ଏହି କାଳରେ "ସମାଜ" ସ୍ୱାଧୀନତା ଆନ୍ଦୋଳନର ମୁଖପତ୍ର ଭାବରେ କାର୍ଯ୍ୟ କରୁଥିଲା । କିଛିଦିନ ପରେ ପ୍ରେସଟି ପୁରୀକୁ ଉଠିଯାଇଥିଲା ଏବଂ "ସମାଜ" ପୁରୀରୁ ପ୍ରକାଶିତ ହେଲା । ୧୯୨୭ ଜୁଲାଇ ମାସ ୨ ତାରିଖରୁ ସମାଜ କଟକରୁ ପ୍ରକାଶିତ ହେଲା ।

ଏହି ସମୟରେ ପେଶାଦାର ସାମ୍ବାଦିକ ନଥିଲେ କିମ୍ବା ସମ୍ବାଦପତ୍ର ଏକ ଶିଳ୍ପ ଭାବରେ ପରିଗଣିତ ହେଉ ନଥିଲା । ୧୯୫୭ରେ ପଣ୍ଡିତ ଗୋଦାବରୀଶ ମିଶ୍ର "ସମାଜ" ସମ୍ପର୍କରେ ଲେଖିଥିଲେ, "ଆଜିକାଲି ସମ୍ବାଦପତ୍ର ସବୁ କୌଣସି ଦଳର ମୁଖପତ୍ର କିନ୍ତୁ ସମାଜର ଜନ୍ମ ସମୟରେ ଦେଶରେ ଏ ଅବସ୍ଥା ନଥିଲା । ଗୋପବନ୍ଧୁ ରାଜନୀତିକ କିମ୍ବା ଅନ୍ୟ କୌଣସି ଦଳକୁ ଜାଣିନଥିଲେ, ଜାଣିଥିଲେ କେବଳ ଦେଶ । ଦେଶର ଶିକ୍ଷା ବିସ୍ତାର ପାଇଁ ସେ ସତ୍ୟବାଦୀରେ ଏକ ଜାତୀୟ ବିଦ୍ୟାଳୟ ସ୍ଥାପନ କଲେ । ବିଶାଳ ନିରକ୍ଷର ଜନତାକୁ ଶିକ୍ଷା ଦେବା ନିମନ୍ତେ ସେହିପରି ଏକ ସମ୍ବାଦପତ୍ରର ଆବଶ୍ୟକତା ଅନୁଭବ କରିବାକୁ ଲାଗିଲେ । ଅର୍ଥର ଅଭାବ ଯୋଗେ ସେ ସେ ଦିଗରେ ଅଗ୍ରସର ହୋଇପାରୁନଥିଲେ । ସେଥିପାଇଁ ସତ୍ୟବାଦୀରେ ରହି ମଧ୍ୟ ବ୍ରହ୍ମପୁରରେ ଆଶା କାଗଜର ସମ୍ପାଦନା ଗ୍ରହଣ କଲେ । କିନ୍ତୁ ସେଥିରେ ତାଙ୍କର ଉଦ୍ଦେଶ୍ୟ ସାଧିତ ହେଉନଥିବାର ଦେଖି ସେ ଅତି ସାମାନ୍ୟ ମୂଳଧନରେ ସାପ୍ତାହିକ ସମାଜ ବାହାର କଲେ ।"

ପରବର୍ତ୍ତୀ କାଳରେ ଝଙ୍କଡ଼ର ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରତିଷ୍ଠିତ ସମ୍ବାଦପତ୍ର "ପ୍ରଜାତନ୍ତ୍ର" ଓଡ଼ିଶାର ଜନଜୀବନକୁ ପ୍ରଭାବିତ କଲା । "ପ୍ରଜାତନ୍ତ୍ର" ପ୍ରଥମେ କଟକରେ ମୁକୁର ପ୍ରେସରେ ମୁଦ୍ରିତ ହୋଇ

ସାପ୍ତାହିକ ଆକାରରେ ପ୍ରକାଶିତ ହେଲା । କନିକା ପ୍ରଜା ଆନ୍ଦୋଳନକୁ ଏହା ଜୋରଦାର କରିଥିଲା ।

ଏହାର ପ୍ରକାଶକ ଓ ମୁଦ୍ରାକର ଥିଲେ ଜାଜପୁରର ସ୍ୱାମୀ କଂଶୀଧର ଦାସ । ପରେ ଏହା ବାଲେଶ୍ୱର ଟାଉନ ପ୍ରେସରେ ମୁଦ୍ରିତ ହୋଇ ପ୍ରକାଶିତ ହେଲା । ଏହି ସମୟରେ ଉକ୍ତର ମହତାବ "Adventure" ନାମକ ଏକ ଇଂରାଜୀ ପତ୍ରିକା ମଧ୍ୟ ପ୍ରକାଶ କରିଥିଲେ । ଲବଣ ସତ୍ୟାଗ୍ରହ ସମୟରେ ପ୍ରଜାତନ୍ତ୍ର ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଥିଲା । ବହୁ ବାଧା-ବିଘ୍ନ ମଧ୍ୟରେ ପରେ ଏହା ବନ୍ଦ ହୋଇଯାଇଥିଲା । ଡକ୍ଟର ମହତାବ "ସମାଜ" ସମ୍ବାଦପତ୍ରର ସମର୍ଥନ ନପାଇବାରୁ ପ୍ରାୟ ୧୫ ବର୍ଷକାଳ ବନ୍ଦ-ଥିବା "ପ୍ରଜାତନ୍ତ୍ର" ପୁଣି ପ୍ରକାଶ କରିବାର ଯୋଜନା ହେଲା ଓ ୧୯୪୭ ଅଗଷ୍ଟମାସ ୯ ତାରିଖରୁ କଟକର ଦାଶରଥି ପ୍ରେସ୍‌ରେ ମୁଦ୍ରିତ ହୋଇ ଦୈନିକ "ପ୍ରଜାତନ୍ତ୍ର" ଆତ୍ମପ୍ରକାଶ କଲା । ୧୯୪୭ ନଭେମ୍ବର ୧୪ରେ ପ୍ରଜାତନ୍ତ୍ରର ନିଜସ୍ୱ ପ୍ରେସ୍ ପ୍ରତିଷ୍ଠିତ ହେଲା । ପ୍ରଜାତନ୍ତ୍ର ପ୍ରେସ ପ୍ରତିଷ୍ଠା ଲାଗି ମୋତିଲାଲ ପଣ୍ଡିତ ଏକ ଜାଗା ଦାନ କରିଥିଲେ । ଏହାପରେ ଡକ୍ଟର ମହତାବ ଇଂରାଜୀ ଦୈନିକ ସମ୍ବାଦପତ୍ର "ଦି ଇଷ୍ଟର୍ଣ୍ଣ ଟାଇମ୍‌ସ" ପ୍ରକାଶ କରିଥିଲେ ।

ପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରେ ଅଧିଷ୍ଠିତ ହୋଇଥିବା ସାହିତ୍ୟିକ ଓ ସାମ୍ବାଦିକ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଦୀର୍ଘକାଳ ପର୍ଯ୍ୟନ୍ତ ଉଭୟ ସମ୍ବାଦପତ୍ରର ସମ୍ପାଦକ ଥିଲେ ।

ଡକ୍ଟର ମହତାବଙ୍କ ଶେଷାବସ୍ଥାରେ ତାଙ୍କର ସୁଯୋଗ୍ୟ ପୋଷ୍ୟପୁତ୍ର ଶ୍ରୀ ଭର୍ତ୍ତୃହରି ମହତାବ "ପ୍ରଜାତନ୍ତ୍ର"ର ସମ୍ପାଦନା ଦାୟିତ୍ୱ ଗ୍ରହଣ କଲେ ଓ ତାଙ୍କ ଅନ୍ତେ ପ୍ରଜାତନ୍ତ୍ର ପ୍ରଚାର ସମିତିର ଅଧ୍ୟକ୍ଷ ହେଲେ ।

ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ଝଙ୍କାର, ମୀନାବଜାର, ପ୍ରଜାତନ୍ତ୍ର ସାପ୍ତାହିକୀ ଓ ପ୍ରତିଭାର ପ୍ରକାଶନ ବିଭିନ୍ନ ସମୟରେ ହେଲା । ଦୈନିକ "ଦି ଇଷ୍ଟର୍ଣ୍ଣ ଟାଇମ୍‌ସ" ବନ୍ଦ ହେବାପରେ ପୁଣି ସାପ୍ତାହିକ ଓ ପରେ ପୁନର୍ବାର ଦୈନିକ ଆକାରରେ ପ୍ରକାଶିତ ହୋଇ ସବୁଦିନ ପାଇଁ ବନ୍ଦ ହୋଇଗଲା ।

୧୯୨୧-୨୨ରେ "ସ୍ୱରାଜ" ସାପ୍ତାହିକ ପ୍ରକାଶ ପାଇଥିଲା । ୧୯୩୨ରୁ ଏହା ଦୈନିକ ସମ୍ବାଦପତ୍ର ଭାବରେ ପ୍ରକାଶ ପାଇଥିଲା ।

୧୯୪୧ରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମ୍ପାଦନାରେ ଦୈନିକ "ନବଭାରତ" ପ୍ରକାଶ ପାଇଲା । ତାଙ୍କ ସମ୍ପାଦନାରେ ମାସିକ ସାହିତ୍ୟ ପତ୍ରିକା "ନବଭାରତ" ମଧ୍ୟ ପ୍ରକାଶିତ ହୋଇଥିଲା ।

୧୯୪୫-୪୬ରେ କେ. ଏନ୍. ଆଚାର୍ଯ୍ୟଙ୍କ ସମ୍ପାଦନାରେ "ଓଡ଼ିଶା ଫାଷ୍ଟ" ଏବଂ ମଧୁ ମହାନ୍ତିଙ୍କ ସମ୍ପାଦନାରେ "ଅବଜରଭର" ପ୍ରକାଶ ପାଇଥିଲା ।

୧୯୪୬ରେ ସାପ୍ତାହିକ "ଗଣତନ୍ତ୍ର" ପ୍ରକାଶ ପାଇଥିଲା ଓ ୧୯୫୬ରେ ଏହା ଦୈନିକ ସମ୍ବାଦପତ୍ରରେ ପରିଣତ ହୋଇ ପାଞ୍ଚବର୍ଷ ପରେ ବନ୍ଦ ହୋଇଯାଇଥିଲା । ଶ୍ରୀ ସୁରେନ୍ଦ୍ର ମହାନ୍ତି ଏହାର ସମ୍ପାଦକ ଥିଲେ । ପୁନର୍ବାର ୧୯୬୬ରୁ ଏହି ସମ୍ବାଦପତ୍ର "ସ୍ୱରାଜ୍ୟ" ନାମରେ ଆତ୍ମପ୍ରକାଶ କଲା । ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଏହାର ମୁଖ୍ୟ ପୃଷ୍ଠପୋଷକ ଥିଲେ । ସେ ରାଜ୍ୟ ବିଧାନସଭାରେ ବିରୋଧୀଦଳ ନେତା ତଥା ରାଜ୍ୟ ମୁଖ୍ୟମନ୍ତ୍ରୀ ପଦରେ ଅଧିଷ୍ଠିତ ହୋଇଥିଲେ ।

୧୯୫୧ରେ "ମାତୃଭୂମି" ବି ସାପ୍ତାହିକ ଭାବରେ ବାଳକୃଷ୍ଣ କରଙ୍କ ସମ୍ପାଦନାରେ ପ୍ରକାଶ ପାଇଲା । ପରେ ଏହା ଏକ ଦୈନିକ ସମ୍ବାଦପତ୍ରରେ ପରିଣତ ହେଲା । ଏହି ସଂସ୍ଥା ପକ୍ଷରୁ ପରେ ମାସିକ ସାହିତ୍ୟ ପତ୍ରିକା "ସହକାର" ମଧ୍ୟ ପ୍ରକାଶ ପାଇଲା ।

୧୯୬୦ରେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଶ୍ରୀ ମନମୋହନ ମିଶ୍ରଙ୍କ ସମ୍ପାଦନାରେ ଦୈନିକ "କଳିଙ୍ଗ" ପ୍ରକାଶ ପାଇଲା । ୧୯୭୧-୭୨ରେ ଏହାର ପ୍ରକାଶନ ବନ୍ଦ ହୋଇଗଲା । ଶ୍ରୀ ବିଜୁ ପଟ୍ଟନାୟକ ମଧ୍ୟ ରାଜନୀତି କ୍ଷେତ୍ରରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ନିୟୋଜିତ କରି ରାଜ୍ୟ ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ତଥା ରାଜ୍ୟ ବିଧାନସଭାରେ ବିରୋଧୀଦଳ ନେତା ପଦରେ ଅଧିଷ୍ଠିତ ହେଲେ ।

୧୯୬୭ରେ ବୀରେନ ମିତ୍ରଙ୍କ ଦ୍ୱାରା ଦୈନିକ "ଜନଶକ୍ତି" ପ୍ରକାଶ ପାଇଲା । ଲୋକନାଥ ମିଶ୍ର ଏହାର ସମ୍ପାଦକ ହେଲେ । ବୀରେନ ମିତ୍ର ମଧ୍ୟ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରେ କିଛିକାଳ ପାଇଁ ରହିଥିଲେ ।

ଏଥିପୂର୍ବରୁ ୧୯୬୫ରେ ଶ୍ରୀ ଆର୍. ପି. ଶାସ୍ତ୍ରୀଙ୍କ ସମ୍ପାଦନାରେ ଇଂରାଜୀ ଦୈନିକ ସମ୍ବାଦପତ୍ର "ଓଡ଼ିଶା ଟାଇମ୍ସ" ପ୍ରକାଶ ପାଇଥିଲା ।

ସମ୍ବଲପୁରରୁ ପଶ୍ଚିମ ଓଡ଼ିଶାର ପ୍ରଥମ ଦୈନିକ ସମ୍ବାଦପତ୍ର "କୋଶଳ" ୧୯୭୦ ବିଜୟା ଦଶମୀଠାରୁ ଶ୍ରୀ ବିକ୍ରମ ତ୍ରିପାଠୀଙ୍କ ସମ୍ପାଦନାରେ ପ୍ରକାଶ ପାଇଲା । ଏଥିପୂର୍ବରୁ ତାଙ୍କ ସମ୍ପାଦନାରେ ୧୯୬୪ରେ ଇଂରାଜୀ ପାକ୍ଷିକ "ସ୍କୁଇଜ" ପ୍ରକାଶ ପାଇଥିଲା ଓ ୧୯୬୬ରୁ "ପଞ୍ଚମୁଖୀ" ସତ୍ୟବ୍ରତ ପ୍ରେସରୁ ପ୍ରାୟ ତିନବର୍ଷ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା ।

୧୯୭୪ରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ଦ୍ୱାରା ଦୈନିକ "ଧରିତ୍ରୀ"ର ପ୍ରକାଶନ ଆରମ୍ଭ ହେଲା ।

"ଇଷ୍ଟର୍ଣ୍ଣ ଟାଇମ୍ସ"ର ପ୍ରକାଶନ ବନ୍ଦ ହୋଇଯିବା ପରେ ଓଡ଼ିଶାରୁ ଆଉ ଏକ ଇଂରାଜୀ ସମ୍ବାଦପତ୍ର ପ୍ରକାଶନର ଆବଶ୍ୟକତା ରହିଥିଲା । ପୁସ୍ତକ ପ୍ରକାଶକ ଶ୍ରୀ ନବ କିଶୋର ମହାପାତ୍ର "ନିଉଜ ଅଫ୍ ଦି ଓ୍ୱାର୍ଲ୍ଡ" ପ୍ରକାଶ କଲେ । ଏଥି ସହ ତାଙ୍କ ଦ୍ୱାରା "ମନପବନ", "ଗୃହସାଥୀ" "ଆଲୋକ", "ସରଳା", "ଉତ୍କଳ ସାହିତ୍ୟ", "ଚିତ୍ରକଥା," "ଦି ନିମ୍" ଓ "ସତକଥା" ପ୍ରଭୃତି ସାମୟିକ ପତ୍ରପତ୍ରିକା ପ୍ରକାଶ ପାଇଲା ।

୧୯୭୨ରେ କଟକରୁ ସାପ୍ତାହିକ ପ୍ରକାଶିତ ହୋଇଥିବା "ପ୍ରଗତିବାଦୀ" ୧୯୭୯ରୁ ଦୈନିକ ସମ୍ବାଦପତ୍ର ଭାବରେ ଭୁବନେଶ୍ୱରରୁ ପ୍ରକାଶ ପାଇଲା ।

୧୯୮୧ରେ ଭୁବନେଶ୍ୱରରୁ ଦୈନିକ "ଜନଲିପି"ର ପ୍ରକାଶନ ଆରମ୍ଭ ହେଲା ଓ ଏକ ନିରପେକ୍ଷ ସମ୍ବାଦପତ୍ର ଭାବରେ ପ୍ରତିଷ୍ଠିତ ହେଲା । ସଂପ୍ରତି ଶ୍ରୀ ସତ୍ୟ ମହାପାତ୍ରଙ୍କ ସମ୍ପାଦନାରେ ଏହା ପ୍ରକାଶିତ ହେଉଛି ।

୧୯୮୧ ଏପ୍ରିଲ ମାସ ୧୬ ତାରିଖରୁ ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ହୀରାଖଣ୍ଡ ଟ୍ରଷ୍ଟ ଦ୍ୱାରା ଦୈନିକ "ହୀରାଖଣ୍ଡ" ସମ୍ବଲପୁରରୁ ପ୍ରକାଶ ପାଇଲା ।

୧୯୮୪ ଅକ୍ଟୋବର ୪ ତାରିଖ ବିଜୟା ଦଶମୀଠାରୁ ଶ୍ରୀ ସୌମ୍ୟ-ରଞ୍ଜନ ପଟ୍ଟନାୟକଙ୍କ ଦ୍ୱାରା ଦୈନିକ "ସମ୍ବାଦ"ର ପ୍ରକାଶନ ଆରମ୍ଭ ହେଲା । ସମ୍ବାଦପତ୍ର ପ୍ରକାଶନର ନୂତନ ପଦ୍ଧତି ଓ ଔଦ୍ୟୋଗିକ ଜ୍ଞାନ କୌଶଳର ପ୍ରୟୋଗ ପୂର୍ବକ ଫଟୋ ଟାଇପ ସେଟିଂରେ ଏହାର ମୁଦ୍ରଣ କାର୍ଯ୍ୟ ସମ୍ପନ୍ନ ହେଲା । ଏହା ଓଡ଼ିଶାର ସର୍ବପ୍ରଥମ ବ୍ୟବସାୟିକ ସମ୍ବାଦପତ୍ର । ଏହି ସଂସ୍ଥା ପକ୍ଷରୁ ଏକ ଇଂରାଜୀ ଦୈନିକ "ଦି ସନ୍ ଟାଇମ୍ସ", "କଥା", "ସିନେ ସମ୍ବାଦ", "ଫୁଲଝରି", "ନବସମ୍ବାଦ" ଓ ଉର୍ଦ୍ଦୁ ଭାଷାରେ "ସାହାର" ପ୍ରଭୃତି ପତ୍ରିକା ମଧ୍ୟ ପ୍ରକାଶ ପାଇଲା ।

ଏହା ବ୍ୟତୀତ ଭୁବନେଶ୍ୱରରୁ "ଜନଭାଷା", "କଳିଙ୍ଗ ମେଲ", ବାଲେଶ୍ୱରରୁ "ରାଷ୍ଟ୍ରଦୂତ", "ଆଜକାଲି" ସମ୍ବଲପୁରରୁ "ଅଗ୍ନିଶିଖା", "ଡାକରା" ପ୍ରଥମେ ବଲାଙ୍ଗିର ଓ ପରେ ରାଉରକେଲାରୁ "ଯୁଗବାଣୀ", ରାଉରକେଲା ଓ କଟକରୁ "କୁରୁକ୍ଷେତ୍ର", "ମାତୃଭାଷା" ଓ ଚୌଦ୍ୱାରରୁ "ବହ୍ନି" ପ୍ରଭୃତି ଦୈନିକ ସମ୍ବାଦପତ୍ର ବିଭିନ୍ନ ସମୟରେ ପ୍ରକାଶ ପାଇଲା ।

ବିଭିନ୍ନ ଦୈନିକ ସମ୍ବାଦପତ୍ରର ପ୍ରକାଶନ ସାଙ୍ଗକୁ ଭଞ୍ଜ ପ୍ରଦୀପ (୧୯୩୪), ମୟୂରଭଞ୍ଜ କ୍ରନିକ୍ଲ (୧୯୩୫), ଜାଗରଣ, ବାରିପଦା ମୟୂର-ଭଞ୍ଜ ଷ୍ଟେଟ ଗେଜେଟ (୧୯୩୬), ଶଙ୍ଖ (୧୯୪୫), ପ୍ରଜାଶକ୍ତି ଜୀବନ, ସୁରଭି (୧୯୫୮) ପ୍ରଭୃତି ପତ୍ରପତ୍ରିକା ଓଡ଼ିଶାରେ ସମ୍ବାଦପତ୍ରର ବିକାଶ-ଧାରାକୁ ଅବ୍ୟାହତ ରଖିଥିଲା ।

ପୌରୁଷ, ଆସନ୍ତାକାଲି, ନବରବି, ବର୍ତ୍ତମାନ, ଜନଶକ୍ତି, ଝୁଅଁ-ଖୁଣ୍ଟା, ଦୁର୍ମୁଖ, ନବଲିପି, ସୁନାପିଲା, ଜନନୀ, ଗଣବାଣୀ, ଗଣ ଇସ୍ତାହାର, ସ୍ୱତନ୍ତ୍ର, ସାପ୍ତାହିକ ନିଉଜ ଡ଼େ, ସୌରଭ, ହରିବୋଲ, ଅବତାର, ନୂଆ ଦୁନିଆଁ, ପ୍ରଜାମିତ୍ର, ଦୁନିଆଁ, ସର୍ବହରା, ରୁଦ୍ର ଆହ୍ୱାନ ଓ ଉଦ୍‌ବୋଧ ପ୍ରଭୃତି ମାସିକ ତଥା ସାମୟିକ ପତ୍ରପତ୍ରିକା ଭିନ୍ନ ଭିନ୍ନ ସମୟରେ କୃତିତ୍ୱର ସ୍ୱାକ୍ଷର ବହନ କରୁଛି ।

ରାଉରକେଲାରୁ ହିନ୍ଦୀ ଦୈନିକ "ଯୁଗ ବୃତ୍ତାନ୍ତ" ଓ କେତେକ ହିନ୍ଦୀ ସାପ୍ତାହିକ ମଧ୍ୟ ଓଡ଼ିଶାର ବିଭିନ୍ନ ସ୍ଥାନରୁ ପ୍ରକାଶିତ ହେଲା ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୯୫୧ରେ ଓଡ଼ିଶାର ପ୍ରଥମ ଚଳଚ୍ଚିତ୍ର ପତ୍ରିକା "ସିନେ ଓଡ଼ିଶା" ବ୍ରହ୍ମପୁରରେ ପ୍ରକାଶିତ ହୋଇଥିଲା ଓ ଏହାପରେ ଓଡ଼ିଶାରେ ଚଳଚ୍ଚିତ୍ର ସାମ୍ବାଦିକତା ବିକାଶ ଲାଭ କଲା ।

ଓଡ଼ିଶା ବାହାରୁ ପ୍ରକାଶିତ ହେଉଥିବା ସମ୍ବାଦପତ୍ର ଓ ପତ୍ରପତ୍ରିକା ମଧ୍ୟ ଓଡ଼ିଶାରେ ବହୁଳ ଭାବରେ ପ୍ରସାରିତ ହୋଇଥାଏ । ମଧ୍ୟପ୍ରଦେଶର ରାୟପୁର ସହରରୁ ପ୍ରକାଶିତ ହେଉଥିବା ହିନ୍ଦୀ ସମ୍ବାଦପତ୍ରଗୁଡ଼ିକ ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗିର ଓ କଳାହାଣ୍ଡି ଜିଲ୍ଲାରେ ବ୍ୟାପକ ଭାବରେ ପ୍ରସାରିତ ଓ ଆଦୃତ । ଅପରପକ୍ଷରେ ମଧ୍ୟପ୍ରଦେଶ ତଥା ବିହାର ପ୍ରଦେଶର ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଓଡ଼ିଆ ସମ୍ବାଦପତ୍ରର ପ୍ରଚାର ଆଦୌ ନାହିଁ କହିଲେ ଚଳେ ।

ଓଡ଼ିଶାର ଅଧିକାଂଶ ସମ୍ବାଦପତ୍ର ରାଜନୈତିକ ବ୍ୟକ୍ତିବିଶେଷ, ଟ୍ରଷ୍ଟ ଅଥବା ସୋସାଇଟି ଦ୍ୱାରା ପ୍ରକାଶିତ । ପୁନଶ୍ଚ ଉକ୍ତ ଟ୍ରଷ୍ଟ ଅଥବା ସୋସାଇଟିଗୁଡ଼ିକ ରାଜନୈତିକ ବ୍ୟକ୍ତିବିଶେଷଙ୍କ ଦ୍ୱାରା ନିୟନ୍ତ୍ରିତ । ତେଣୁ ସମ୍ପୃକ୍ତ ରାଜନୈତିକ ବିଶେଷଙ୍କ ରାଜନୈତିକ ସ୍ୱାର୍ଥ ଓ କାର୍ଯ୍ୟକଳାପର ପ୍ରତିଫଳନ ଅଧିକାଂଶ ଓଡ଼ିଆ ସମ୍ବାଦପତ୍ରର ଧର୍ମରେ ପରିଣତ ହୋଇଛି ।

ଓଡ଼ିଶାରେ ସମ୍ବାଦପତ୍ର ସଂଖ୍ୟା କ୍ରମେ ବୃଦ୍ଧି ପାଇବାରେ ଲାଗିଛି । ୧୯୮୩ ଏପ୍ରିଲ ମାସ ଶେଷସୁଦ୍ଧା ରାଜ୍ୟରେ ମୋଟ ୧୭ଟି ଦୈନିକ ସମ୍ବାଦପତ୍ର ପ୍ରକାଶିତ ହେଉଥିଲା । ପରବର୍ତ୍ତୀ ସାଢ଼େ ପାଞ୍ଚବର୍ଷ ମଧ୍ୟରେ ଆଉ ୧୧ଟି ସମ୍ବାଦପତ୍ର ନୂତନ ଭାବରେ ପ୍ରକାଶିତ ହେଉଥିଲା ।

ଓଡ଼ିଶାରେ ପ୍ରକାଶିତ ହେଉଥିବା ସମ୍ବାଦପତ୍ର ତଥା ପତ୍ରପତ୍ରିକାର ପ୍ରସାରଣ ସଂଖ୍ୟା କମି ମନ୍ଥରଗତିରେ ବୃଦ୍ଧି ପାଉଛି । ୧୯୫୭ ସୁଦ୍ଧା ରାଜ୍ୟର ମୋଟ ୫୧ ହଜାର ୭୩୯ଟି ଗ୍ରାମ ପାଇଁ ଖଣ୍ଡିଏ ଲେଖାଏଁ ସମ୍ବାଦପତ୍ର ମଧ୍ୟ ପ୍ରକାଶିତ ହେଉନଥିଲା । ତେବେ ୧୯୮୩ ଶେଷବେଳକୁ ପ୍ରତି ଗ୍ରାମ ପାଇଁ ହାରାହାରି ତିନିଖଣ୍ଡ ଲେଖାଏଁ ସମ୍ବାଦପତ୍ର ପ୍ରକାଶିତ ହେଉଥିଲା ବୋଲି ଏକ ହିସାବରୁ ଜଣାଯାଏ । ତେବେ ଏହି ବୃଦ୍ଧି ପରିମାଣ ଆଦୌ ସନ୍ତୋଷଜନକ ନୁହେଁ ବୋଲି କୁହାଯାଇପାରେ ।

୧୯୭୬ ଓ ୧୯୭୭ ବର୍ଷର ପ୍ରସାରଣ ସଂଖ୍ୟା ସମ୍ପର୍କରେ ୫୦ଟି ପତ୍ରପତ୍ରିକା ଓ ସମ୍ବାଦପତ୍ରରୁ ତଥ୍ୟ ମିଳିଥିଲା ଏବଂ ଉକ୍ତ ତଥ୍ୟରୁ ଜଣାଯାଇଥିଲା ଯେ ବର୍ଷକ ମଧ୍ୟରେ ପ୍ରସାରଣ ସଂଖ୍ୟାରେ ଶତକଡ଼ା ୧୪ ଭାଗ ବୃଦ୍ଧି ଘଟିଥିଲା । ୧୯୭୭ରେ ସମଗ୍ର ଓଡ଼ିଶାରେ ୧୧ଟି ଦୈନିକ, ୨୫ଟି ସାପ୍ତାହିକ, ଗୋଟିଏ ଦ୍ୱି-ସାପ୍ତାହିକ ଏବଂ ୧୫୨ଟି ଅନ୍ୟାନ୍ୟ ସାମୟିକ ପତ୍ରପତ୍ରିକା ପ୍ରକାଶିତ ହେଉଥିଲା । ଏହି ସମୟସୁଦ୍ଧା ଓଡ଼ିଶାର କୌଣସି ସମ୍ବାଦପତ୍ରର ପ୍ରସାରଣ ସଂଖ୍ୟା ଏକ ଲକ୍ଷକୁ ଅତିକ୍ରମ କରିପାରିନଥିଲା । ଏହି ବର୍ଷ ଶେଷସୁଦ୍ଧା ସମସ୍ତ ଓଡ଼ିଆ ଦୈନିକ ସମ୍ବାଦପତ୍ରର ମିଳିତ ପ୍ରସାରଣ ସଂଖ୍ୟା ୧ ଲକ୍ଷ ୨୭ ହଜାର, ସାପ୍ତାହିକ ଗୁଡ଼ିକର ପ୍ରସାରଣ ସଂଖ୍ୟା ୧୭ ହଜାର ତଥା ଅନ୍ୟାନ୍ୟ ସାମୟିକ ପତ୍ରପତ୍ରିକାର ପ୍ରସାରଣ ସଂଖ୍ୟା ୧ ଲକ୍ଷ ୧୫ ହଜାର ଥିଲା । ମୋଟ ପ୍ରସାରଣ ସଂଖ୍ୟା ଥିଲା ୨ଲକ୍ଷ ୫୯ ହଜାର ।

୧୯୮୨ରେ ୧୩ଟି ଦୈନିକ ସମ୍ବାଦପତ୍ର, ୪୩ଟି ସାପ୍ତାହିକ ଏବଂ ୨୭୫ଟି ଅନ୍ୟାନ୍ୟ ସାମୟିକ ପତ୍ରପତ୍ରିକା ପ୍ରକାଶ ପାଉଥିଲା । ଉକ୍ତବର୍ଷ ଶେଷସୁଦ୍ଧା ଦୈନିକ ସମ୍ବାଦପତ୍ରଗୁଡ଼ିକର ମିଳିତ ପ୍ରସାରଣ ସଂଖ୍ୟା ୨ଲକ୍ଷ ୫ ହଜାର । ସାପ୍ତାହିକଗୁଡ଼ିକର ପ୍ରସାରଣ ସଂଖ୍ୟା ୨୯ ହଜାର । ପାକ୍ଷିକଗୁଡ଼ିକର ପ୍ରସାରଣ ସଂଖ୍ୟା ୨୧ ହଜାର, ମାସିକଗୁଡ଼ିକର ପ୍ରସାରଣ ସଂଖ୍ୟା ୧ ଲକ୍ଷ ୮୮ ହଜାର ଓ ତ୍ରୟମାସିକଗୁଡ଼ିକର ପ୍ରସାରଣ ସଂଖ୍ୟା ୧୮ ହଜାର ଥିଲା । ମୋଟ ପ୍ରସାରଣ ସଂଖ୍ୟା ଥିଲା ୪ ଲକ୍ଷ ୬୧ ହଜାର ।

ସମ୍ପ୍ରତି କେବଳ ଦୈନିକ ସମାଜର ପ୍ରସାରଣ ସଂଖ୍ୟା ଲକ୍ଷାଧିକ ହୋଇଛି । ବହୁବିଧ କାରଣରୁ ଓଡ଼ିଶାରୁ ପ୍ରକାଶିତ ହେଉଥିବା ସମ୍ବାଦପତ୍ର ଓ ପତ୍ରପତ୍ରିକାର ପ୍ରସାରଣ ସଂଖ୍ୟା ଆଶାନୁରୂପ ବୃଦ୍ଧି ପାଇନାହିଁ ।

ଓଡ଼ିଶାର କ୍ଷେତ୍ରଫଳ ୧ଲକ୍ଷ ୫୫ ହଜାର ୭୦୭ ବର୍ଗ କିଲୋମିଟର । ୧୯୮୧ ଜନଗଣନା ଅନୁସାରେ ରାଜ୍ୟର ଜନସଂଖ୍ୟା ଥିଲା ୨କୋଟି ୬୩ ଲକ୍ଷ ୭୦ ହଜାର ୨୭୧ । ଶତକଡ଼ା ୮୦ ଭାଗ ଲୋକ ଗ୍ରାମାଞ୍ଚଳରେ ବସବାସ କରନ୍ତି ଓ କୃଷି ଉପରେ ନିର୍ଭର କରନ୍ତି । ରାଜ୍ୟର ମୋଟ ଆୟତନର ଶତକଡ଼ା ୪୫ ଭାଗ ଭୂଖଣ୍ଡ ପ୍ରାକୃତିକ ଅରଣ୍ୟ ସମ୍ପଦରେ ପରିପୂର୍ଣ୍ଣ । ଶତକଡ଼ା ୬୬ ଭାଗ ଲୋକ ନିରକ୍ଷର ଓ ୬୦ ଭାଗ ଲୋକ ଦାରିଦ୍ର୍ୟ ସୀମା-

ରେଖା ତଳେ ଜୀବନଯାପନରତ । ଗମନା ଗମନ ବ୍ୟବସ୍ଥାରେ ମଧ୍ଯ ଆବଶ୍ୟକୀୟ ଉନ୍ନତି ଘଟିନାହିଁ । ପୁନଶ୍ଚ ସମ୍ବାଦପତ୍ରର ମୁଦ୍ରଣ ପରିପାଟି ଆଶାନୁରୂପ ଆକର୍ଷଣୀୟ ହୋଇପାରିନାହିଁ । ପ୍ରତିଯୋଗିତାମୂଳକ ବଜାରରେ ତିଷ୍ଠିପାରିବାଭଳି ଅବସ୍ଥା ଓଡ଼ିଆ ସମ୍ବାଦପତ୍ରର ଆସିନାହିଁ । ଲୋକଙ୍କ ସମସ୍ୟା ସମ୍ବାଦପତ୍ରଗୁଡ଼ିକରେ ଯଥାର୍ଥ ଭାବରେ ପ୍ରତିଫଳିତ ହେଉନାହିଁ । ଉଦାହରଣ ସ୍ୱରୂପ ରାଜ୍ୟର ଶତକଡ଼ା ୮୦ ଭାଗ ଲୋକ କୃଷି ଉପରେ ନିର୍ଭର କରୁଥିଲେ ମଧ୍ଯ କୌଣସି ସମ୍ବାଦପତ୍ରରେ କୃଷି ସମ୍ବାଦ ଉପରେ ଗୁରୁତ୍ୱାରୋପ କରାଯାଉ ନାହିଁ କିମ୍ବା ଏଥିଲାଗି ସ୍ୱତନ୍ତ୍ର ସ୍ତମ୍ଭ କିମ୍ବା ସ୍ୱତନ୍ତ୍ର ପୃଷ୍ଠା ପ୍ରକାଶ ପାଉନାହିଁ । ଗ୍ରାମାଞ୍ଚଳରେ ସମ୍ବାଦପତ୍ରଗୁଡ଼ିକ ପହଞ୍ଚି ପାରିନାହିଁ ।

ଏଭଳି ପରିସ୍ଥିତିରେ ଅଧିକାଂଶ ଓଡ଼ିଆ ସମ୍ବାଦପତ୍ର ବିଜ୍ଞାପନ ଉପରେ, ବିଶେଷକରି ସରକାରୀ ବିଜ୍ଞାପନ ଉପରେ ନିର୍ଭରଶୀଳ ।

ରାଜ୍ୟ ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ସରକାର ଓ ପ୍ରେସ୍ ମଧ୍ୟରେ ସଂଯୋଗ ରକ୍ଷା, ଏକ୍ରିଡ଼ିସନ କମିଟି ମାଧ୍ୟମରେ ସାମ୍ବାଦିକ-ମାନଙ୍କୁ ସ୍ୱୀକୃତି ପ୍ରଦାନ, ସମ୍ବାଦପତ୍ରଗୁଡ଼ିକୁ ସମ୍ବାଦ, ଫଟୋ ଓ ସରକାରୀ ବିଜ୍ଞାପନ ପ୍ରଦାନ, ଚଳଚ୍ଚିତ୍ର ପ୍ରଦର୍ଶନ, ସଭାସମିତିର ଆୟୋଜନ, ବିଭିନ୍ନ ପ୍ରଚାର ପୁସ୍ତିକା ପ୍ରକାଶନ ଓ ପ୍ରାମାଣିକ ଚିତ୍ର ନିର୍ମାଣ କାର୍ଯ୍ୟ କରିଥାଏ । ଏହି ବିଭାଗ କର୍ତ୍ତୃକ ରାଜ୍ୟ ସରକାରଙ୍କର ନିଜସ୍ୱ ପତ୍ରିକା ଓଡ଼ିଆରେ "ଉତ୍କଳ ପ୍ରସଙ୍ଗ" ଓ ଇଂରାଜୀରେ "ଓଡ଼ିଶା ରିଭ୍ୟୁ" ପ୍ରକାଶିତ ହୋଇଥାଏ ।

ଓଡ଼ିଶାରେ କୌଣସି ବଡ଼ଧରଣର ସମ୍ବାଦ ସରବରାହ ସଂସ୍ଥା ଗଠିତ ହୋଇନାହିଁ । ପ୍ରେସ ନିଉଜ ଅଫ୍ ଇଣ୍ଡିଆ, ଓଡ଼ିଶା ନିଉଜ ଆଣ୍ଡ ଫଟୋ ସର୍ଭିସ ଓ ଇଷ୍ଟର୍ଣ୍ଣ ପ୍ରେସ୍ ଏଜେନ୍ସି ଭଳି କେତେକ ସଂସ୍ଥା ସୀମିତ ସମ୍ବଳ ଓ ସୀମିତ ସୁଯୋଗ ମଧ୍ୟରେ କାର୍ଯ୍ୟ କରୁଛନ୍ତି ।

ଦୂରଦର୍ଶନ ଓ ଆକାଶବାଣୀ କେନ୍ଦ୍ର ସମୂହ ମଧ୍ଯ ରାଜ୍ୟ ସରକାର-ଙ୍କର ବିଭିନ୍ନ କାର୍ଯ୍ୟକ୍ରମ ଜନ ସମକ୍ଷରେ ଉପସ୍ଥାପନ କରିଥାନ୍ତି ।

ସାମଗ୍ରିକ ଭାବରେ କୁହାଯାଇପାରେ ଯେ, ଓଡ଼ିଶାରେ ସମ୍ବାଦପତ୍ରର ବିକାଶଧାରା ଉଦବନ୍ଧିତ ହୋଇପାରିନାହିଁ ।

□□□

# ଅନ୍ୟାନ୍ୟ ଗଣମାଧ୍ୟମର ବିକାଶ

ପ୍ରସଙ୍ଗକ୍ରମେ ଏଠାରେ ଅନ୍ୟାନ୍ୟ ଗଣମାଧ୍ୟମର ବିକାଶ ସମ୍ପର୍କରେ ସମ୍ୟକ୍ ଆଲୋଚନା କରାଯାଇପାରେ । ରେଡ଼ିଓ, ଟେଲିଭିଜନ ଓ ଚଳଚ୍ଚିତ୍ର ପ୍ରଭୃତି ଗଣମାଧ୍ୟମ ଭାରତରେ ବ୍ୟାପକ ଭାବରେ ପ୍ରସାରଲାଭ କରିଛି । ରେଡ଼ିଓ ମାଧ୍ୟମରେ ସ୍ୱଳ୍ପ ସମୟ ମଧ୍ୟରେ ଲୋକଙ୍କ ନିକଟକୁ ତଥ୍ୟାବଳୀ ପହଞ୍ଚିପାରୁଥିବାରୁ ଓ ଟେଲିଭିଜନର ଦୃଶ୍ୟ ପ୍ରସାର ସୁବିଧା ଦୃଷ୍ଟିରୁ ଜନସାଧାରଣରେ ବହୁଳ ଭାବରେ ଆଦୃତ ହେଉଛି ।

୧୯୨୭ରେ ଭାରତରେ ବେତାର କାର୍ଯ୍ୟକ୍ରମ ପ୍ରସାରଣ ଦୁଇଟି ଘରୋଇ ଟ୍ରାନ୍ସମିଟର ଦ୍ୱାରା ବମ୍ବେ ଓ କଲିକତାରେ ଆରମ୍ଭ ହୋଇଥିଲା । ୧୯୩୦ରେ କେନ୍ଦ୍ର ସରକାର ତାହାକୁ ହାତକୁ ନେଇ ଇଣ୍ଡିଆନ୍ ବ୍ରଡକାଷ୍ଟିଙ୍ଗ୍ ସର୍ଭିସ୍ ନାମରେ ପ୍ରସାରଣ ଆରମ୍ଭ କଲେ । ୧୯୩୬ରେ ଏହାର ନାମ ଅଲ୍ ଇଣ୍ଡିଆ ରେଡ଼ିଓ ଏବଂ ୧୯୫୭ରେ ଆକାଶବାଣୀ ରଖାଗଲା । ୧୯୪୭ରେ ଦେଶରେ ମାତ୍ର ଛଅଟି ବେତାର କେନ୍ଦ୍ର ଥିଲା ।

୧୯୬୭ ନଭେମ୍ବର ପହିଲାରୁ ବେତାର ମାଧ୍ୟମରେ ବ୍ୟବସାୟିକ ପ୍ରସାରଣ ଆରମ୍ଭ ହେଲା । ୧୯୭୦ ମଇ ମାସରୁ ପ୍ରାୟୋଜିତ କାର୍ଯ୍ୟକ୍ରମ ପ୍ରସାରଣ ତଥା ୧୯୮୨ ଏପ୍ରିଲ ପହିଲାରୁ ଆକାଶବାଣୀର ମୁଖ୍ୟ ଚ୍ୟାନେଲଗୁଡ଼ିକରୁ ସମ୍ବାଦ ବୁଲେଟିନ୍ ପୂର୍ବରୁ ଓ ପରେ ବ୍ୟବସାୟିକ ପ୍ରସାରଣ କରାଯାଉଛି । ଆକାଶବାଣୀରେ ସ୍ୱତନ୍ତ୍ର ନିଉଜ ସର୍ଭିସ ଡିଭିଜନ ମଧ୍ୟ କାର୍ଯ୍ୟ କରୁଛି ଓ ସମ୍ବାଦ ପ୍ରସାରଣ ଦିଗରେ ଉଲ୍ଲେଖନୀୟ କୃତିତ୍ୱ ହାସଲ କରିଛି । ୧୯୪୯ ଅକ୍ଟୋବର ୨୯ରୁ ବୈଦେଶିକ ପ୍ରସାର ସେବା ମଧ୍ୟ ଆରମ୍ଭ ହେଲା ।

୧୯୫୯ ସେପ୍ଟେମ୍ବର ମାସ ୧୫ ତାରିଖରେ ପ୍ରଥମ ଥର ପାଇଁ ନୂଆଦିଲ୍ଲୀରେ ଟେଲିଭିଜନ କାର୍ଯ୍ୟକ୍ରମ ପ୍ରସାରଣ ପରୀକ୍ଷାମୂଳକ ଭାବରେ

ଆରମ୍ଭ ହୋଇଥିଲା । ପରେ ୧୯୬୫ରୁ ନିୟମିତ ପ୍ରସାରଣ ଚାଲିଲା । ୧୯୭୨ ପରେ ଅଳ୍ପ ବ୍ୟବଧାନରେ ବମ୍ବେ, ଶ୍ରୀନଗର, ଜଳନ୍ଧର, କଲିକତା, ମାଡ୍ରାଜ ଓ ଲକ୍ଷ୍ନୌ ପ୍ରଭୃତି ସ୍ଥାନରେ ନୂତନ ଟେଲିଭିଜନ କେନ୍ଦ୍ରମାନ ପ୍ରତିଷ୍ଠିତ ହୋଇଥିଲା ।

ନଭେମ୍ବର ୧୯୮୨ରେ ନୂଆଦିଲ୍ଲୀରେ ଆୟୋଜିତ ନବମ ଏସୀୟ କ୍ରୀଡ଼ା ପ୍ରତିଯୋଗିତା ଦେଶରେ ଟେଲିଭିଜନ ପ୍ରସାରଣର ବିକାଶ ଦିଗରେ ଅପୂର୍ବ ସୁଯୋଗ ଆଣିଦେଇଥିଲା । ଏହି ଅବସରରେ କୋଡ଼ିଏଟି ସ୍ୱଳ୍ପ ଶକ୍ତି ସମ୍ପନ୍ନ ଟ୍ରାନ୍ସମିଟର ବିଭିନ୍ନ ନଗର ତଥା ପ୍ରାଦେଶିକ ରାଜଧାନୀରେ ପ୍ରତିଷ୍ଠା କରାଗଲା ଓ ଏହାର ସଫଳତା ଯୋଗୁଁ ଏହି କ୍ରମ ଜାରି ରହିଲା । ୧୯୭୬ ଜାନୁୟାରୀ ପହିଲାରୁ ବ୍ୟବସାୟିକ ପ୍ରସାରଣ ଆରମ୍ଭ ହୋଇଥିଲା । ୧୯୮୨ ଅଗଷ୍ଟମାସ ୧୫ ତାରିଖରେ ବିଭିନ୍ନ ସ୍ତରରୁ ବିରୋଧ ସତ୍ତ୍ୱେ ରଙ୍ଗୀନ ଟେଲିଭିଜନର ଶୁଭାରମ୍ଭ ହେଲା ଓ ଟେଲିଭିଜନ ପ୍ରସାରଣରେ ଏକ ନୂତନ ଦିଗନ୍ତ ଉନ୍ମୋଚିତ ହେଲା । ଇନ୍‌ସାଟ-୧ (କ) ସହାୟତାରେ ଗ୍ରାମାଞ୍ଚଳର ବିକାଶ କଳ୍ପେ ପ୍ରସ୍ତୁତ କାର୍ଯ୍ୟକ୍ରମମାନ ଆନ୍ଧ୍ରପ୍ରଦେଶ, ଓଡ଼ିଶା, ମହାରାଷ୍ଟ୍ର, ଗୁଜୁରାଟ, ଉତ୍ତର ପ୍ରଦେଶ ଓ ବିହାରର ଛଅଗୋଟି ଲେଖାଏଁ ଜିଲ୍ଲା ପାଇଁ ପ୍ରସାରିତ ହେଲା ।

ଆକାଶବାଣୀର ଏକ ଶାଖା ଭାବରେ ଟେଲିଭିଜନ ପ୍ରସାରଣ ଆରମ୍ଭ ହୋଇଥିଲା ଓ ୧୯୭୬ ଏପ୍ରିଲ ପହିଲାରେ ଏହାକୁ ତଥ୍ୟ ଓ ବେତାର ମନ୍ତ୍ରଣାଳୟ ଅଧୀନରେ ଏକ ସ୍ୱତନ୍ତ୍ର ବିଭାଗରେ ପରିଣତ କରାଯାଇ ଏହାର ନାମ ଦୂରଦର୍ଶନ ରଖାଗଲା । ଏକ ସରକାରୀ ହିସାବରୁ ଜଣାପଡ଼ିଛି ଯେ ୧୯୮୨ ଡିସେମ୍ବର ଶେଷସୁଦ୍ଧା ଦେଶରେ ମୋଟ ୨୧ ଲକ୍ଷ ୧୧ ହଜାର ୭୨୬ଟି ଟେଲିଭିଜନ ଲାଇସେନ୍ସ ପ୍ରଦାନ କରାଯାଇଥିଲା । ଏଥିମଧ୍ୟରେ ୧୦ ହଜାର କମ୍ୟୁନିଟି ସେଟ୍ ଅନ୍ତର୍ଭୁକ୍ତ । ଏହି ସମୟ ମଧ୍ୟରେ ୩୧୦ଟି ଟେଲିକ୍ଲବ ମଧ୍ୟ ଗଠିତ ହୋଇଥିଲା । ଏଥିରୁ ଟେଲିଭିଜନର ବିକାଶ ସମ୍ପର୍କରେ ସମ୍ୟକ ସୂଚନା ମିଳେ ।

୧୯୭୮ ବେଳକୁ ଦେଶରେ ଆଠଟି, ଟେଲିଭିଜନ କେନ୍ଦ୍ର ଦିଲ୍ଲୀ, ବମ୍ବେ, କଲିକତା, ମାଡ୍ରାଜ, ଶ୍ରୀନଗର, ଅମୃତସର ଓ ଲକ୍ଷ୍ନୌରେ ପ୍ରତିଷ୍ଠିତ

ହୋଇ ପାରିଥିଲା । ଦିଲ୍ଲୀ କେନ୍ଦ୍ରର କାର୍ଯ୍ୟକ୍ରମ ରିଲେ କରିବା ପାଇଁ ମସୌରୀଠାରେ ଏବଂ ବମ୍ବେ କେନ୍ଦ୍ରର କାର୍ଯ୍ୟକ୍ରମ ରିଲେ କରିବାପାଇଁ ପୁନେରେ ରିଲେ କେନ୍ଦ୍ର ଖୋଲାଯାଇଥିଲା ।

ସାଟେଲାଇଟ ଇନ୍‌ଷ୍ଟ୍ରକ୍‌ସନାଲ ଟେଲିଭିଜନ ଏକ୍‌ସପେରିମେଣ୍ଟ ବା ସାଇଟ କାର୍ଯ୍ୟକ୍ରମ ୧୯୭୫ ଅଗଷ୍ଟ ପହିଲାରୁ ଆରମ୍ଭ ହୋଇଥିଲା । ଯୋଗା-ଯୋଗ କ୍ଷେତ୍ରରେ ଏହି ବୃହତ୍ ପରୀକ୍ଷା ୧୯୭୬ ଜୁଲାଇ ମାସ ୩୧ ତାରିଖରେ ସଫଳତାର ସହ ସମ୍ପୂର୍ଣ୍ଣ ହୋଇଥିଲା ଓ ଏହାପରେ ଦୈନିକ ଘ୍ରଣ୍ଟା ପାଇଁ ଚାରୋଟି ଭାଷାରେ କାର୍ଯ୍ୟକ୍ରମ ପ୍ରସାରିତ ହେଲା । ଏହି ଶିକ୍ଷଣୀୟ କାର୍ଯ୍ୟକ୍ରମ ଦେଖିବାଲାଗି ରାଜସ୍ଥାନ, ମଧ୍ୟପ୍ରଦେଶ, ଓଡ଼ିଶା, ବିହାର, ଆନ୍ଧ୍ର-ପ୍ରଦେଶ ଓ କର୍ଣ୍ଣାଟକର ୨୪୦୦ଟି ଗ୍ରାମକୁ ସ୍ୱତନ୍ତ୍ର ଟେଲିଭିଜନ ସେଟ୍ ଯୋଗାଇ ଦିଆଗଲା । ଉକ୍ତ ସଫଳତା ପରିପ୍ରେକ୍ଷୀରେ ଗୁଲ୍‌ବର୍ଗା, ହାଇଦ୍ରା-ବାଦ, ଜୟପୁର, ମୁଜାଫରପୁର, ରାୟପୁର, ଏବଂ ସମ୍ବଲପୁରରେ ୧୯୭୭-୭୮ରେ ଟେଲିଭିଜନ ଟ୍ରାନ୍‌ସମିଟର ପ୍ରତିଷ୍ଠିତ ହେଲା ଓ ମୋଟ ୧୫୬୦ଟି ଗ୍ରାମର ଲୋକେ ଟେଲିଭିଜନ କାର୍ଯ୍ୟକ୍ରମ ଦେଖିପାରିଲେ ।

ଆକାଶବାଣୀ ଓ ଦୂରଦର୍ଶନ କେନ୍ଦ୍ର ତଥା ରିଲେ କେନ୍ଦ୍ରମାନ ଦେଶତମାମ ପ୍ରତିଷ୍ଠିତ ହୋଇଛି ଏବଂ ପ୍ରସାରିତ କାର୍ଯ୍ୟକ୍ରମଗୁଡ଼ିକରେ ନାନାବିଧ ପରିବର୍ତ୍ତନ ଘଟିଛି ।

୧୯୧୨-୧୩ରୁ ଭାରତରେ ଚଳଚ୍ଚିତ୍ର ନିର୍ମାଣ ଆରମ୍ଭ ହୋଇଥିଲା । ଆର୍. ଜି. ଟର୍ଣ୍ଣି ଏବଂ ଏନ. ଜି. ଚିତ୍ରେ ୧୯୧୨ରେ ପ୍ରଥମ ଭାରତୀୟ ଚଳ-ଚ୍ଚିତ୍ର "ପୁଣ୍ଡଲିକ" ନିର୍ମାଣ କରିଥିଲେ । ଦାଦା ସାହେବ ଫାଲ୍‌କେ ନାମରେ ପ୍ରଖ୍ୟାତ ଡ଼ି. ଜି. ଫାଲ୍‌କେ ୧୯୧୩ରେ "ରାଜା ହରିଶ୍ଚନ୍ଦ୍ର" ନିର୍ମାଣ କରିଥିଲେ । ୧୯୩୧ରେ ଆର୍ଦେସିର ଇରାନି ପ୍ରଥମ ସବାକ ଚଳଚ୍ଚିତ୍ର "ଆଲମ ଆରା" ନିର୍ମାଣ କରିଥିଲେ । ତେବେ ୧୯୩୪ ପର୍ଯ୍ୟନ୍ତ ନିର୍ବାକ ଚଳଚ୍ଚିତ୍ର ନିର୍ମାଣ ଅବ୍ୟାହତ ରହିଥିଲା ।

ବର୍ତ୍ତମାନ ଚଳଚ୍ଚିତ୍ର ନିର୍ମାଣ କ୍ଷେତ୍ରରେ ସମଗ୍ର ବିଶ୍ୱରେ ଆମ ଦେଶ ଗୌରବମୟ ସ୍ଥାନରେ ଅଧିଷ୍ଠିତ । ସିନେମାଟୋଗ୍ରାଫ୍ ଆଇନ—୧୯୫୨

ଅନୁସାରେ ଗଠିତ ସେଣ୍ଟ୍ରାଲ ବୋର୍ଡ଼ ଅଫ ଫିଲ୍ମ ସାର୍ଟିଫିକେସନ ବା ସେନସର ବୋର୍ଡ଼ ଦ୍ୱାରା ଏଗୁଡ଼ିକ ଯାଞ୍ଚ କରାଯାଇ ମାନ ପରୀକ୍ଷା କରା-ଯାଉଛି । ଏହାପରେ ଅନେକ ନୂତନ ଆଇନ ମଧ୍ୟ ପ୍ରଣୀତ ହୋଇଛି ।

୧୯୪୮ରୁ ବମ୍ବେରେ ଭାରତ ସରକାରଙ୍କ ଫିଲ୍ମ ଡ଼ିଭିଜନ ଆରମ୍ଭ କରାଯାଇଥିଲା । ଏହି ଡ଼ିଭିଜନ ଦ୍ୱାରା ପ୍ରସ୍ତୁତ ବୃତ୍ତ ଚିତ୍ରମାନ ସମଗ୍ର ଦେଶରେ ତଥା ବିଦେଶରେ ପ୍ରଦର୍ଶିତ ହୋଇଥାଏ ।

ଚଳଚ୍ଚିତ୍ର ଦର୍ଶକମାନଙ୍କ ଉପରେ ଖୁବ ଶୀଘ୍ର ପ୍ରଭାବ ବିସ୍ତାର କରିପାରୁ-ଥିଲେ ମଧ୍ୟ ଭାରତୀୟ ଚଳଚ୍ଚିତ୍ରଗୁଡ଼ିକ ମୁଖ୍ୟତଃ ବ୍ୟବସାୟିକ ଭିତ୍ତିରେ ନିର୍ମିତ ତଥା ମନୋରଞ୍ଜନ ଧର୍ମୀ ହୋଇଥିବାରୁ ସାମାଜିକ ଦାୟିତ୍ୱ ତୁଲାଇ ପାରୁନାହିଁ ।

ସରକାର ଓ ଗଣମାଧ୍ୟମ ମଧ୍ୟରେ ଯୋଗାଯୋଗ ରକ୍ଷା ଲାଗି ପ୍ରେସ୍ ଇନ୍‌ଫରମେସନ ବ୍ୟୁରୋ ପ୍ରତିଷ୍ଠିତ ହୋଇଛି । ଗଣମାଧ୍ୟମଗୁଡ଼ିକୁ ତଥ୍ୟ, ସମ୍ବାଦ ଓ ଫଟୋ ଆଦି ଯୋଗାଇବା, ସାମ୍ବାଦିକମାନଙ୍କୁ କେନ୍ଦ୍ରୀୟ ସ୍ୱୀକୃତି ପ୍ରଦାନ କରିବା, ପରିଭ୍ରମଣ ବ୍ୟବସ୍ଥା କରିବା, ସାଂସ୍କୃତିକ ବିନିମୟ କାର୍ଯ୍ୟ-କ୍ରମ କାର୍ଯ୍ୟକାରୀ କରାଇବା ଓ ସୂଚନା କେନ୍ଦ୍ର ପରିଚାଳନା ପ୍ରଭୃତି ଏହାର ଦାୟିତ୍ୱ ପରିସରଭୁକ୍ତ ।

ସରକାରୀ କାର୍ଯ୍ୟକ୍ରମର ପ୍ରଚାର ଓ ଜନଚେତନାର ବିକାଶ ଲାଗି କ୍ଷେତ୍ରପ୍ରଚାର ସଂସ୍ଥା ଓ ଦୃଶ୍ୟ ପ୍ରଚାର ନିର୍ଦ୍ଦେଶାଳୟ କାର୍ଯ୍ୟକରୁଛି । ଏହା ବ୍ୟତୀତ କେନ୍ଦ୍ର ସରକାରଙ୍କ ପବ୍ଲିକେସନ ଡ଼ିଭିଜନ ଓ ଫଟୋ ଡ଼ିଭିଜନ ମଧ୍ୟ କାର୍ଯ୍ୟକରୁଛି ।

ଉକ୍ତ ସଂସ୍ଥାଗୁଡ଼ିକର ଅର୍ଦ୍ଧାଧିକ କାର୍ଯ୍ୟ ସାମ୍ବାଦିକତାର ପରିସର-ଭୁକ୍ତ । ସମ୍ବାଦପତ୍ର ତଥା ଅନ୍ୟାନ୍ୟ ଗଣମାଧ୍ୟମଗୁଡ଼ିକର ବିକାଶରେ ଏହି ସଂସ୍ଥାଗୁଡ଼ିକର ମିଳିତ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏଗୁଡ଼ିକ ମୂଳତଃ ସମ୍ବାଦପତ୍ରର କାର୍ଯ୍ୟ କରିଥାନ୍ତି । ତେବେ ସମସ୍ତ ପ୍ରକାର ସୁବିଧା ସୁଯୋଗ ଉପଲବ୍ଧ ହେଉଥିବାବେଳେ ଏହି ସଂସ୍ଥାଗୁଡ଼ିକର ସନ୍ତୋଷଜନକ କର୍ମତତ୍ପରତା ପରିଲକ୍ଷିତ ହେଉନାହିଁ ।

ଉପରୋକ୍ତ କେନ୍ଦ୍ରୀୟ ସଂସ୍ଥାଗୁଡ଼ିକ ସାଙ୍ଗକୁ ପ୍ରତ୍ୟେକ ରାଜ୍ୟ ସରକାର ମଧ୍ୟ ଅନୁରୂପ ସଂସ୍ଥାମାନ ଗଠନ କରିଛନ୍ତି ।

ଆକାଶବାଣୀ ଓ ଦୂରଦର୍ଶନ କେନ୍ଦ୍ର ସରକାରଙ୍କ ନିୟନ୍ତ୍ରଣାଧୀନ । ଫ୍ରାନ୍ସ ଓ ଇଟାଲିରେ ମଧ୍ୟ ଏକଦା ଏହି ଅବସ୍ଥା ଥିଲା । ପରେ ଫ୍ରାନ୍ସରେ ଘରୋଇ ବେତାର କେନ୍ଦ୍ର ଖୋଲିବା ଅନୁମତି ପ୍ରଦାନ କରାଗଲା । ସଂପ୍ରତି ଇଟାଲି ଭଳି କ୍ଷୁଦ୍ର ରାଷ୍ଟ୍ରରେ ପ୍ରାୟ ୮୦୦୦ଟି ଘରୋଇ ବେତାର କେନ୍ଦ୍ର ପ୍ରାୟ ୮୦୦ଟି ଟେଲିଭିଜନ କେନ୍ଦ୍ର ସ୍ଥାପିତ ହୋଇଛି । ୩୨ ଲକ୍ଷ ଲୋକ ପ୍ରତ୍ୟହ ୧୩ ଘଣ୍ଟାକାଳ ସମୁଦାୟ ୭ରୁ ୧୧ଟି ଚ୍ୟାନେଲରେ ଟେଲିଭିଜନ କାର୍ଯ୍ୟକ୍ରମ ଉପଭୋଗ କରିପାରୁଛନ୍ତି । ସ୍ୱନଷ୍ଟ କେତେକ ମହାନଗରୀରେ ୧୮ରୁ ୨୦ଟି ଚ୍ୟାନେଲ ମାଧ୍ୟମରେ ଲୋକେ ଫ୍ରାନ୍ସ, ମନାକୋ, ସୁଇଜରଲାଣ୍ଡ ଓ ଅଷ୍ଟ୍ରିଆର ଟେଲିଭିଜନ କାର୍ଯ୍ୟକ୍ରମ ଦେଖି ପାରୁଛନ୍ତି ।

ଆମ ଦେଶରେ ସ୍ୱତନ୍ତ୍ର ଚ୍ୟାନେଲରେ ସିଧାସଳଖ ନିଜସ୍ୱ କାର୍ଯ୍ୟକ୍ରମ ପ୍ରସାରଣ ନିମନ୍ତେ ରାଜ୍ୟସରକାରଗୁଡ଼ିକ ମଧ୍ୟ କ୍ଷମତାପନ୍ନ ହୋଇ ନାହାନ୍ତି ।

ଗଣମାଧ୍ୟମର ବିକାଶ ସାଧନର ଗୁରୁତ୍ୱ ସଂପ୍ରତି ପ୍ରତ୍ୟେକ ସ୍ତରରେ ଉପଲବ୍ଧ କରାଯାଉଛି । ଭାରତଭଳି ଏକ ବିଶାଳ ଗଣତାନ୍ତ୍ରିକ ରାଷ୍ଟ୍ରରେ ଜନମତର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି ସ୍ୱୀକାର କରାଯିବା ଅତ୍ୟାବଶ୍ୟକ ହୋଇପଡ଼ୁଛି ।

୧୯୯୦ ମାର୍ଚ୍ଚ ମାସ ଶେଷ ସୁଦ୍ଧା ଆମ ଦେଶରେ ୧୦୦ଟି ଆକାଶବାଣୀ କେନ୍ଦ୍ର, ୫୧୪ଟି ଦୂରଦର୍ଶନ ପ୍ରସାରଣ କେନ୍ଦ୍ର ଏବଂ ୧୮ଟି କାର୍ଯ୍ୟକ୍ରମ ପ୍ରସାରଣ କେନ୍ଦ୍ର କାର୍ଯ୍ୟକରୁଥିଲା ।



# ସାମ୍ବାଦିକତା

ସାମ୍ବାଦିକତାର ସର୍ବସମ୍ମତ ସଂଜ୍ଞା ନିରୂପଣ ଏକ କଷ୍ଟକର ବ୍ୟାପାର । ସୌନ୍ଦର୍ଯ୍ୟ ବସ୍ତୁରେ ନଥାଏ, ଥାଏ ଦ୍ରଷ୍ଟାର ନୟନରେ । ସେହିପରି ସାମ୍ବାଦିକତାର ମର୍ମ ପ୍ରତ୍ୟେକ ମଣ୍ଡଳରେ ଏକ ଓ ଅଭିନ୍ନ ହୋଇ ନ ପାରେ ।

ପ୍ରେଗ୍ ସ୍ଥିତ ଚାର୍ଲସ ବିଶ୍ୱବିଦ୍ୟାଳୟର ସାମ୍ବାଦିକତା ବିଭାଗର ମୁଖ୍ୟ ପ୍ରଫେସର ଡକ୍ଟର ଭ୍ଲାଡ଼ିମିର ହୁଡ଼େକ ଲେଖିଛନ୍ତି—"Under the term journalism we understand collections of pieces of work either written or printed, spoken or pictorial, often created in mutual combination which in a documentary way depict social reality, especially that of universal importance and which by multiplication through various mass media, have a mass-scale impact on a differentiated public. Journalism socially orienates this public formulates and expresses its different social opinions, attitudes and deeds, its world out look gives and idea of the manifold contemporary phenomena, processes and tendencies in all their complexity, of the laws determining the function and development of economic, socio-political, intellectual and ideological life of society-all from respective class positions."

ମୁଦ୍ରିତ ଅଥବା ଲିଖିତ ତଥ୍ୟ । କଥିତ ଅଥବା ଚିତ୍ରିତ ଭାବରେ ଉପଲବ୍ଧ ତଥ୍ୟ ସାମାଜିକ ଜୀବନରେ ଗୁରୁତ୍ୱପୂର୍ଣ୍ଣ ତଥା ବୈଚିତ୍ର୍ୟପୂର୍ଣ୍ଣ

ବିଷୟ । ସମାଜର ସମସାମୟିକ ଚିତ୍ର, ଜନଚେତନା'ର ବିକାଶଧାରା, ଅର୍ଥନୈତିକ, ରାଜନୈତିକ, ସାମାଜିକ, ବୌଦ୍ଧିକ ଏବଂ ଆଦର୍ଶଗତ ଜନ-ଜୀବନ ସଂକ୍ରାନ୍ତ ବିସ୍ତୃତ ତଥ୍ୟର ଆହରଣ ଏବଂ ତାହାର ସୁବୋଧ ଓ ସୁବିନ୍ୟସ୍ତ ଲେଖନ ତଥା ସମ୍ପାଦନା କାର୍ଯ୍ୟକୁ ସାମ୍ବାଦିକତା ବୋଲି କୁହାଯା'ଇପାରେ ।

ପ୍ରକାଶନ ଉପଯୋଗୀ ସମସ୍ତ ସମ୍ବାଦକୁ ଗ୍ରହଣ କରି "New York Times" ସମ୍ବାଦପତ୍ର ଆଦର୍ଶ ସାମ୍ବାଦିକତାର ସଜ୍ଞାକୁ ସରଳ କରି ଦେଇଥିଲା । ଉତ୍ତମ ଓ ଫଳପ୍ରଦ ସାମ୍ବାଦିକତା ସଂପର୍କରେ ନିଜର ଲକ୍ଷ୍ୟ ଘୋଷଣା କରିଥିଲା । ତାହା ଥିଲା ଏହିପରି :—

"To be the first but not the hastiest with the news;

To persuade and not to dogmatise;

To be emphatic without being hysterical;

To be graffic without sensationalism;

To give the story and to reject the stunt;

To miss nothing that is amusing and to keep the trivial in proportion;

To give the news faithfully and fully without featuring the worst side of human nature."

ଏହିପରି ନାନା ଭାବରେ ସାମ୍ବାଦିକତାର ସଜ୍ଞା ବର୍ଣ୍ଣନା କରାଯାଇ-ପାରେ । ତେବେ ସେଗୁଡ଼ିକର ସାରମର୍ମ ହେଉଛି, ପ୍ରକାଶନାର୍ଥେ ବିଷୟ-ବସ୍ତୁର ଆହରଣ, ଲେଖନ ଓ ସମ୍ପାଦନା କାର୍ଯ୍ୟକୁ ସାମ୍ବାଦିକତା ଓ ଏହି କାର୍ଯ୍ୟ କରୁଥିବା ବ୍ୟକ୍ତି ସାମ୍ବାଦିକ ।

ତେବେ ଏହି ଲେଖନରେ କେତେକ ଗୁଣ ସାଧାରଣ ଭାବରେ ପ୍ରକାଶିତ ହେଉଥିବା ଆବଶ୍ୟକ । କୌଣସି ବିଷୟରେ ପ୍ରସ୍ତୁତ ଲେଖାଟି

ପ୍ରସଙ୍ଗ ଅନ୍ତର୍ଭୁକ୍ତ ହୋଇଥିବା ଆବଶ୍ୟକ ଏବଂ ସଂପୃକ୍ତ ବିଷୟର ବିଭିନ୍ନ ଦିଗ ଉପରେ ଆଲୋକପାତ ହୋଇଥିବା ଆବଶ୍ୟକ । ବିଷୟବସ୍ତୁରେ ସତ୍ୟତା ରହିବା ସଙ୍ଗେ ସଙ୍ଗେ ତାହା କେବଳ ସୂଚନାଧର୍ମୀ ନ ହୋଇ ଜନମତ ଗଠନଧର୍ମୀ ହେବା ଆବଶ୍ୟକ । ତାହା ସମସ୍ୟାନୁଧର୍ମୀ ହେବା ସଙ୍ଗେ ସଙ୍ଗେ ସଂପୃକ୍ତ ଘଟଣାବଳୀ ସମ୍ପର୍କରେ ତତ୍‌କ୍ଷଣାତ ସୂଚନା ପ୍ରଦାନ କରିପାରୁଥିବା ଆବଶ୍ୟକ ।

ବିଭିନ୍ନ ସୂତ୍ରରୁ ଆହରିତ ତଥ୍ୟାବଳୀକୁ ଗଣମାଧ୍ୟମରେ ପ୍ରସାରିତ ହୋଇପାରିବାଭଳି ଭାଷା ବିନ୍ୟାସରେ ସୁସଜ୍ଜିତ କରିବା ସାମ୍ବାଦିକତାର କାର୍ଯ୍ୟ ପରିସରଭୁକ୍ତ । ସମାଜର ଜ୍ୱଳନ୍ତ ଘଟଣାବଳୀ ସଂକ୍ରାନ୍ତ ସଠିକ ତଥ୍ୟ ପ୍ରଦାନ ପୂର୍ବକ ଜନମତକୁ ସଙ୍ଗଠିତ ଓ ନିୟନ୍ତ୍ରିତ କରିବାରେ ସାମ୍ବାଦିକ ଓ ସାମ୍ବାଦିକତାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଜନମାନସକୁ ବିଭ୍ରାନ୍ତ କରିବାର ଖେଳର ପରିଣତି ସ୍ୱରୂପ ମଣିଷର ଚିନ୍ତାରାଜ୍ୟରେ ଅବକ୍ଷୟ ଘଟିଥାଏ ।

ସାମାଜିକ ବିକାଶ ସଂକ୍ରାନ୍ତ କେବଳ ସଠିକ୍ ତଥ୍ୟ ପରିବେଷଣ ଯଥେଷ୍ଟ ନୁହେଁ ବରଂ ସେଗୁଡ଼ିକର ଯଥାର୍ଥ ବିଶ୍ଳେଷଣ ଓ ସାମାଜିକ ଉପ-ଯୋଗିତାର ଅନୁଶୀଳନ ସାମ୍ବାଦିକତାର ଧର୍ମ । ଇଚ୍ଛାକୃତ ଭାବରେ ଜଣେ ଦାୟିତ୍ୱହୀନ ସାମ୍ବାଦିକର ବିକୃତ ତଥା ଉଦ୍ଦେଶ୍ୟମୂଳକ ତଥ୍ୟ ପରିବେଷଣ ଓ ଜଣେ ଦାୟିତ୍ୱବାନଙ୍କ ସାମ୍ବାଦିକର ଭୁଲକ୍ରମେ ବିକୃତ ତଥ୍ୟ ପରିବେଷଣ— ଉଭୟ ସମାଜ ପକ୍ଷରେ ହାନିକାରକ । ଉପଲବ୍ଧ ତଥ୍ୟାବଳୀରୁ ଗୁରୁତ୍ୱ କ୍ରମରେ ସମ୍ବାଦ ପରିବେଷଣ କରାଯିବା ଉଚିତ । ଅସଂପୂର୍ଣ୍ଣ ତଥ୍ୟ ପରି-ବେଷଣ ପ୍ରାୟତଃ ନିରର୍ଥକ ବୋଲି କୁହାଯାଇପାରେ ।

ପୁନଶ୍ଚ ଆହରିତ ତଥ୍ୟାବଳୀ ଉପରେ ସାମ୍ବାଦିକ ନିଜର ବିଚାର ବୁଦ୍ଧି ପ୍ରୟୋଗ ପୂର୍ବକ ସମ୍ବାଦ ଓ ତତ୍‌ସହ ଅଭିମତ ପ୍ରକାଶ କରିବା ଆବଶ୍ୟକ । ଏଠାରେ ମନେରଖିବାର କଥା ଯେ ସମ୍ବାଦିକ କୌଣସି ପୋଷ୍ଟ ଅଫିସ କିମ୍ବା ଟେଲିଫୋନ ଏକ୍‌ସଚେଞ୍ଜ ଅଥବା କୌଣସି ଟ୍ରାନ୍‌ସ ମିଟର୍ ନୁହେଁ ।

କେତେକଙ୍କ ମତରେ ସାମ୍ବାଦିକତା କେବଳ ଦୁର୍ଘଟଣା, ଉତ୍ସବାନୁଷ୍ଠାନ, ସ୍ୱାଗତ ସମ୍ବର୍ଦ୍ଧନା, ଅପରାଧ, ଅଦାଲତ ଖବରଣୀ, କ୍ରୀଡା ତଥା ପ୍ରାକୃତିକ ଦୁର୍ବିପାକ ଇତ୍ୟାଦି ସଂପର୍କୀୟ ସମ୍ବାଦ ସଂଗ୍ରହ ମଧ୍ୟରେ ସୀମିତ ରହିବା ଉଚିତ । ସେମାନଙ୍କ ମତରେ ରାଜନୈତିକ, ଅର୍ଥନୈତିକ ସମସ୍ୟା କିମ୍ବା ବିଜ୍ଞାନ ପ୍ରଭୃତି ବିଷୟ କେବେ କେମିତି ପାଠକମାନଙ୍କୁ ଆକର୍ଷିତ କରିଥାଏ । ଏହି ମତ ସମ୍ପୂର୍ଣ୍ଣ ତ୍ରୁଟିପୂର୍ଣ୍ଣ ବୋଲି କୁହାଯାଇପାରେ । ଜଗତର ସକଳ ବିଷୟବସ୍ତୁକୁ ନେଇ ଶୁଦ୍ଧ ଓ ସାବଲୀଳ ଭାଷା ତଥା ଆକର୍ଷଣୀୟ ଶୈଳୀରେ ସମ୍ବାଦ ଲେଖାଯିବା ଉଚିତ । ଏଠାରେ ପୁନର୍ବାର ସ୍ମରଣ କରାଇ ଦିଆଯାଇପାରେ ଯେ ରାଜନୈତିକ ଓ ଅର୍ଥନୈତିକ ସମ୍ବାଦମାନ ଜାଣିବା ଲାଗି ପାଠକମାନଙ୍କ ବ୍ୟଗ୍ରତା ଜନିତ କାରଣରୁ ବିଶ୍ୱରେ ସର୍ବପ୍ରଥମେ ଦୈନିକ ସମ୍ବାଦପତ୍ରର ପ୍ରକାଶନର ପରିକଳ୍ପନା ହୋଇଥିଲା । ଏହା ସତ୍ୟ ଯେ ରାଜନୈତିକ, ଅର୍ଥନୈତିକ ଓ ବିଜ୍ଞାନ ସଂପର୍କୀୟ ବିଷୟମାନ ସମସ୍ତ ସମୟରେ ପ୍ରାସଙ୍ଗିକତା ଦୃଷ୍ଟିରୁ ଅଧିକ ଆକର୍ଷଣ ସୃଷ୍ଟି କରେ । ତେବେ ଏହା କୌଣସି ସମୟରେ ଆକର୍ଷଣ ଶୂନ୍ୟ ବୋଲି କୁହାଯାଇ ପାରିବ ନାହିଁ ।

ତ୍ରୁଟିପୂର୍ଣ୍ଣ ସମ୍ବାଦ ସଂଯୋଜନା ଅନେକ ସମୟରେ ଅଶାନ୍ତି ଓ ଅରାଜକତାର କାରଣ ହୋଇଥାଏ । ତେଣୁ ସମ୍ବାଦ ପ୍ରସ୍ତୁତବେଳେ ସାମ୍ବାଦିକମାନେ ଯଥେଷ୍ଟ ସତର୍କତା ଅବଲମ୍ବନ କରିବା ଆବଶ୍ୟକ । ବ୍ୟକ୍ତିଗତ କୁତ୍ସା ଓ ରାଜନୈତିକ ବିରୋଧ ପ୍ରକଟ ଆଦି ବହୁଳ ଭାବରେ ସାମ୍ବାଦିକତା କ୍ଷେତ୍ରରେ ପରିଲକ୍ଷିତ ହେଉଛି । ସାମ୍ବାଦିକତା ଏ କ୍ଷେତ୍ରରେ ଆନ୍ତରିକ, ଗଠନମୂଳକ ଓ ଦାୟିତ୍ୱସମ୍ପନ୍ନ ହେବା ଆବଶ୍ୟକ ।

ଜନଜୀବନର ଉପଲବ୍ଧିକୁ ସଠିକ୍ ଭାବରେ ହୃଦୟଙ୍ଗମ କରି ତାକୁ ଜନସମକ୍ଷରେ ନିର୍ଭୀକ ନିରପେକ୍ଷ ଭାବରେ ଉପସ୍ଥାପନ କରିବା ସୁସ୍ଥ ସାମ୍ବାଦିକତାର ଲକ୍ଷଣ ବୋଲି ମହାତ୍ମା ଗାନ୍ଧୀ ମତପ୍ରକାଶ କରିଛନ୍ତି । ତେଣୁ ସେ ତାଙ୍କର ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି—"The sole aim of journalism should be service. The newspaper press is a great power, but just as an unchained

torrent of water submerges whole countryside and devastrates crops, even so an uncontrolled pen serves but to destroy. If the control is from without, it proves more poisonous than want of control. It can be profitable only when exercised from within. If this line of reasoning is correct, how many of the journals in the world stand the test? But who would stop those that are useless? And, who should be the judge? The useful and the useless must, like good and the evil, generally go on together, and man must make the choice."

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଜଣେ ସାମ୍ବାଦିକ ଭାବରେ ଗାନ୍ଧିଜୀ ଜନଗଣଙ୍କ ହୃଦୟକୁ ସ୍ପର୍ଶ ଓ ପ୍ରଭାବିତ କରିପାରିଥିଲେ ନ୍ୟାୟସଙ୍ଗତ ତଥା ନିର୍ମଳ ପଥରେ ।

ସିସିରୋ ଲେଖିଥିଲେ—' The causes of events are more interesting than the events themselves."

ସୁନିୟୋଜିତ ଶବ୍ଦ ସଂଯୋଜନା ତଥା ସାମାଜିକ ଓ ସବୋଧର ରାଷ୍ଟ୍ରୀୟ କର୍ତ୍ତବ୍ୟ ପ୍ରତି ଧ୍ୟାନ ରଖି ସମ୍ବାଦ ପରିବେଷଣ କରାଯିବା ଆବଶ୍ୟକ । ସାମ୍ବାଦିକର ଆକର୍ଷଣୀୟ ବ୍ୟକ୍ତିତ୍ୱ କାର୍ଯ୍ୟକ୍ଷେତ୍ରରେ ବିଶେଷ ସହାୟକ ହୋଇଥାଏ ; ଯୁକ୍ତରାଷ୍ଟ୍ର ଆମେରିକାରେ ସାମ୍ବାଦିକମାନେ କୌଣସି ଉପହାର ଗ୍ରହଣ କରିବା, ମାଗଣା ଟିକଟ, ମାଗଣା ଯାତାୟାତ ବ୍ୟବସ୍ଥା କିମ୍ବା ସାମ୍ବାଦିକ ଭାବରେ କୌଣସି ସ୍ୱତନ୍ତ୍ର ସୁବିଧା ସୁଯୋଗ ଗ୍ରହଣ କରିବାର ପକ୍ଷପାତି ନୁହନ୍ତି । ଏହା ବିଶ୍ୱର ପ୍ରତ୍ୟେକ ଅଞ୍ଚଳରେ ସମ୍ଭବ ହୋଇପାରିବ ଯଦି ସମ୍ବାଦପତ୍ରଗୁଡ଼ିକର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ହେବ, ବିରୋଧୀ ମତକୁ ଯଥାଯଥ ପ୍ରାଧାନ୍ୟ ଦିଆଯିବ ଓ ସାମ୍ବାଦିକମାନଙ୍କର ବୃତ୍ତିଗତ ନିରାପତ୍ତା ସ୍ୱୀକୃତ ହେବ ।

ଆଲବର୍ଟ କାମ୍ୟୁ ଜଣେ ଉତ୍ତମ ସାମ୍ବାଦିକ ସମ୍ପର୍କରେ କହିଥିଲେ—
"Who first of all, is supposed to have ideas."

ତେବେ ସବୁ ସମୟରେ ପ୍ରଥମେ ପରିବେଷିତ ସମ୍ବାଦ ସର୍ବୋତ୍ତମ ହୋଇ-ନ ପାରେ । କେଣ୍ଟ ତରବରିଆ ଭାବରେ ଅଭ୍ରାନ୍ତକର ସମ୍ବାଦ ପରିବେଷଣ କରିବା ଅପେକ୍ଷା କାମ୍ୟଙ୍କ ଭାଷାରେ—"It is better to come second and report the truth than to be first and false". First and true ହେବା ସର୍ବୋତ୍ତମ ।

ଅନ୍ୟାନ୍ୟ କ୍ଷେତ୍ରରେ ସଫଳତା ହାସଲ ଲାଗି ପ୍ରଫୁଲ୍ଲଚିତ୍ତ, ଗଭୀର ଉତ୍ସାହ, କଠିନ ପରିଶ୍ରମ, ସଚ୍ଚୋଟପଣିଆ, ଶୃଙ୍ଖଳିତ ଜୀବନ, ଧୈର୍ଯ୍ୟ, ସାହସ ତଥା ଶ୍ରେଷ୍ଠ ଶ୍ରେଷ୍ଠ ଘଟଣାବଳୀ ପ୍ରତି ସତର୍କତା ପ୍ରଭୃତି ଯେଉଁଭଳି ଆବଶ୍ୟକ, ସାମ୍ବାଦିକତା କ୍ଷେତ୍ରରେ ସଫଳତା ଲାଭ ଲାଗି ମଧ୍ୟ ସେଗୁଡ଼ିକ ପ୍ରୟୋଜନ । ସ୍ୱେଟ୍ ମାର୍ଡ଼ନ ନାନା ଉଦାହରଣ ଦେଇ ଏଗୁଡ଼ିକର ତାତ୍ପର୍ଯ୍ୟ ପ୍ରମାଣିତ କରିଛନ୍ତି ।

ପ୍ରଫୁଲ୍ଲ ଚିତ୍ତର ରହସ୍ୟକୁ ହୃଦୟଙ୍ଗମ କରି ସ୍କଟ୍ ହର୍ଷ କହୁଥିଲେ "ମୁଁ ଜାଣିପାରୁନାହିଁ କ'ଣ କରିବି, ମୁଁ ଚଢ଼େଇର ପରି ପରି ହାଲୁକା, ଦେବଦୂତ ପରି ମଗ୍ନ, ସ୍କୁଲ ଛାତ୍ରପରି ପୁଲକିତ ଓ ମଦ୍ୟପ ପରି ମସ୍ତ ହୋଇ-ଯାଇଛି ।" ସାମ୍ବାଦିକତାର କାର୍ଯ୍ୟ ସମ୍ପାଦନ ବେଳେ ସମ୍ବାଦିକମାନେ ଏହି ଭାବନାର ବଶବର୍ତ୍ତୀ ହେବା ଆବଶ୍ୟକ ।

ସଚ୍ଚୋଟ ଭାବରେ କାର୍ଯ୍ୟକଲେ ବିଳମ୍ବରେ ହେଲେ ମଧ୍ୟ ସିଦ୍ଧି ଅବଶ୍ୟ ମିଳିବ । ମାଇକେଲ ଏଞ୍ଜେଲୋ, ରଫେଲଙ୍କ ବିଷୟରେ ଲେଖିଛନ୍ତି— "ସେ ଅତ୍ୟନ୍ତ ସ୍ନେହୀ ଥିଲେ । ସେ ଯେଉଁ ପ୍ରସିଦ୍ଧି ଅର୍ଜନ କରିଥିଲେ, ସେଥିଲାଗି ତାଙ୍କର ବୁଦ୍ଧିମତ୍ତା ସାଙ୍ଗକୁ ପରିଶ୍ରମ ହିଁ ଦାୟୀ ।"

ରଫେଲ୍‌ଙ୍କୁ ଜଣେ ପ୍ରଶ୍ନକଲେ "ଆପଣ ଏଭଳି ଅପୂର୍ବ କାର୍ଯ୍ୟ କିପରି କରିପାରିଲେ ?" ରଫେଲ୍ ଉତ୍ତର ଦେଇଥିଲେ, "ମୁଁ କୌଣସି ବିଷୟକୁ କେବେହେଲେ ଉପେକ୍ଷା କରିନାହିଁ ।"

ରଫେଲ୍ ମାତ୍ର ୩୭ ବର୍ଷ ବଞ୍ଚିଥିଲେ । ସେ ୨୮୭ଟି ତୈଳଚିତ୍ର ସାଙ୍ଗକୁ ପାଞ୍ଚଶହରୁ ଅଧିକ ନକ୍ସା ପ୍ରସ୍ତୁତ କରିଥିଲେ । ତାଙ୍କର ଚିତ୍ରାବଳୀ

ଲକ୍ଷ ଲକ୍ଷ ଟଙ୍କାରେ ବହୁଗୁଣ ହୋଇଥିଲା । ତାଙ୍କ ମୃତ୍ୟୁରେ ସମଗ୍ର ଗ୍ରେଟ୍‌ରେ ଶୋକର ଛାୟା ଖେଳିଯାଇଥିଲା ।

ଗୋଲ୍ଡ ସ୍ମିଥ କଠୋର ପରିଶ୍ରମପୂର୍ବକ ଚାରୋଟି ପଂକ୍ତି ଲେଖି-ପାରିଲେ ସେଦିନର ବହୁତ କାମ ହୋଇଗଲା ବୋଲି ଭାବୁଥିଲେ । "ଦି ଡେଜର୍ଟେଡ୍ ଭିଲେଜ୍" ପୁସ୍ତକ ରଚନାଲାଗି ତାଙ୍କୁ ସାତବର୍ଷ ଲାଗିଥିଲା । ବ୍ରାୟଣ୍ଟ ତାଙ୍କର ପୁସ୍ତକ "Thanatopsis" ପ୍ରକାଶନ ପୂର୍ବରୁ ଶହେ ଥର ଲେଖି ମଧ୍ୟ ସନ୍ତୁଷ୍ଟ ହୋଇ ନ ଥିଲେ । ଗିବନ୍ ତାଙ୍କର ପ୍ରସିଦ୍ଧ ପୁସ୍ତକ "ଡିକ୍ଲାଇନ ଆଣ୍ଡ ଫଲ୍"ର ପ୍ରଥମ ପରିଚ୍ଛେଦଟିକୁ ନଅଥର ଲେଖିବାପରେ ଯାଇ ସନ୍ତୁଷ୍ଟ ହୋଇଥିଲେ । ଏହି ପୁସ୍ତକଟି ଲେଖିବାଲାଗି ତାଙ୍କୁ ଲାଗିଥିଲା ପଚିଶ ବର୍ଷ । ସମ୍ବାଦ ପ୍ରକାଶନ ପୂର୍ବରୁ ନିଜେ ସାମ୍ବାଦିକ ସନ୍ତୁଷ୍ଟ ହେବା ଆବଶ୍ୟକ ।

ଔପନ୍ୟାସିକ ଏମିଲ ଜୋଲା କହନ୍ତି, "କର୍ମ ଏହି ସଂସାରର ସବୁଠାରୁ ବଡ଼ ନିୟମ । କର୍ମ କରୁଥିବା ଲୋକ ସାର୍ଥକତା ଲାଭ କରେ ।" ପରିଶ୍ରମର ଅନ୍ୟନାମ ଜୀବନ, ଅନ୍ୟ ସମସ୍ତ ଜ୍ଞାନ ବ୍ୟର୍ଥ ଅଟେ ।

ପୋପ କହିଛନ୍ତି—"ଜଣେ ସଚ୍ଚୋଟ ମଣିଷ ଈଶ୍ୱରଙ୍କର ସର୍ବୋତ୍ତମ କୃତି ଅଟେ ।" ହେଣ୍ରି ହେନରୀ କ୍ଲେ କହିଥିଲେ, "ମୁଁ ରାଷ୍ଟ୍ରପତି ହେବା ଅପେକ୍ଷା ସତ୍ୟନିଷ୍ଠ ହେବାକୁ ଅଧିକ ପସନ୍ଦ କରେଁ ।"

ଜର୍ଜ ଷ୍ଟିଫେନ୍‌ସନ ସୁରକ୍ଷା ପ୍ରଦୀପ ବା ସେଫ୍‌ଟି ଲ୍ୟାମ୍ପ ଉଦ୍ଭାବନ କରିଥିଲେ । କିନ୍ତୁ ତାର ପରୀକ୍ଷଣ ଏକ ବିପଦସଙ୍କୁଳ କାର୍ଯ୍ୟ ଥିଲା । ସାହସର ସହ ତାର ପ୍ରୟୋଗ ନିମନ୍ତେ ଏକ ଖଣି ଭିତରକୁ ଓହ୍ଲାଇଗଲେ । ତାଙ୍କର ସମସ୍ତ ବନ୍ଧୁ ଆଶ୍ଚର୍ଯ୍ୟ ହୋଇଗଲେ ତଥା ସୁରକ୍ଷିତ ସ୍ଥାନଗୁଡ଼ିକରେ ଲୁଚିଗଲେ । ବିପଦ ସ୍ଥଳରେ ପହଞ୍ଚି ଜର୍ଜ ସୁରକ୍ଷା ପ୍ରଦୀପକୁ ଗ୍ୟାସର ପ୍ରବଳ ବେଗ ସମ୍ମୁଖରେ ଜୋରରେ ଘୂରାଇବାକୁ ଲାଗିଲେ । ପ୍ରଥମେ ଦୀପ ଶିଖା ଅଧିକ ପ୍ରଜ୍ୱଳିତ ହେଲା ଓ କ୍ରମେ ଧିମେଇ ଯାଇ ଲିଭିଗଲା । ଦୂଷିତ ବାୟୁର କୌଣସି ପ୍ରଭାବ ପଡ଼ିଲା ନାହିଁ କି ବିସ୍ଫୋରଣ ହେଲା ନାହିଁ । କେବଳ ଧୈର୍ଯ୍ୟ ଓ ସାହସ ଯୋଗୁଁ ଜର୍ଜ ସଫଳତାର ସୋପାନରେ ପହଞ୍ଚି-ପାରିଥିଲେ ।

ଛୋଟ ଛୋଟ ଘଟଣାବଳୀ ପ୍ରତି ସାମ୍ବାଦିକମାନେ ସତର୍କ ହେବା ଉଚିତ । କାରଣ ଛୋଟ ଛୋଟ ଘଟଣାବଳୀରୁ ବଡ ବଡ ଅନର୍ଥର ସୃଷ୍ଟି ହୋଇଥାଏ ।

ଚାର୍ଲସ ଡିକେନ୍‌ସ "ଅଲ୍ ଦି ଇୟର ରାଉଣ୍ଡ" ପୁସ୍ତକରେ ଲେଖିଛନ୍ତି, "କେହି ଜଣେ ପ୍ରଶ୍ନ କଲା ବୁଦ୍ଧିମାନ ଲୋକ କାହାକୁ କୁହାଯାଏ ? ଉତ୍ତର ମିଳିଲା ଅତି ଛୋଟ ଛୋଟ ଘଟଣାବଳୀ ପ୍ରତି ଯିଏ ଧ୍ୟାନ ଦିଏ ।"

ବଡ ବଡ ଲୋକଙ୍କ ଜୀବନ ନିର୍ମାଣ ଛୋଟ ଛୋଟ ଘଟଣାବଳୀରୁ ହୋଇଥାଏ । ମହତ୍ତ୍ୱପୂର୍ଣ୍ଣ ଏବଂ ମହାନ ଘଟଣାବଳୀ ଜୀବନରେ କ୍ୱଚିତ ଘଟିଥାଏ ।

ସାମ୍ବାଦିକତା ଆଜି ଅନ୍ୟତମ ଶ୍ରେଷ୍ଠ ସାମାଜିକ ଅସ୍ତ୍ର ଓ ବିକାଶୋନ୍ମୁଖୀ ଜୀବିକା ଭାବରେ ପରିଗଣିତ । ଏହି ପରିପ୍ରେକ୍ଷୀରେ କଲମମୂନର ଶକ୍ତିକୁ ସାମାଜିକ ଉନ୍ନତି ଦିଗରେ ନିଷ୍ଠାର ସହ ପ୍ରୟୋଗ କରିବା ଯେଉଁଭଳି ଆବଶ୍ୟକ, ଏହାର ଅପବ୍ୟବହାର ପ୍ରତି ସତର୍କ ହେବା ମଧ୍ୟ ସେତିକି ପ୍ରୟୋଜନ ।

Baver Crookଙ୍କ ସମ୍ପର୍କରେ Baldwin କହିଥିଲେ, "Power without responsibility, the perogative of the harlot through out the ages. ଅର୍ଥାତ୍ କୌଣସି ଦାୟିତ୍ୱ ନ ଥାଇ ଯୁଗ ଯୁଗ ବେଶ୍ୟାମାନେ କ୍ଷମତାଶାଳୀ ।" ଏହି ଉକ୍ତି ଯେଉଁଭଳି ସମ୍ବାଦପତ୍ର ପ୍ରତି ପ୍ରଯୁଜ୍ୟ ନ ହୁଏ ବୋଲି Croce କହିଥିଲେ ।

ଠାକୁର ରାଧାନାଥ ରଥ ଲେଖିଛନ୍ତି—'Allurement on one side and hidden harassment on the other have been our fetters to a great extent. It is not only on account of the ruling janta but our own moral fall to a great instant."

ପ୍ରେସ ସ୍ୱାଧୀନତା ନାମରେ ଉଚ୍ଛୃଙ୍ଖଳତା ପ୍ରଦର୍ଶନୀୟ ନୁହେଁ । ନୈତିକତାର ଅବକ୍ଷୟ ଏ ଦିଗରେ ନୈରାଶ୍ୟଜନକ ବାତାବରଣ ସୃଷ୍ଟି କରିଛି । ଅପର ପକ୍ଷରେ "ଶ୍ରେଣୀ ସଂଘର୍ଷର ଇତିହାସ ହିଁ ମାନବଜୀବନର ଇତିହାସ" ହୋଇଥିବାରୁ ନିରପେକ୍ଷ ସାମ୍ବାଦିକତାର ବିଶେଷ ଅବକାଶ ନାହିଁ । ପୁନଶ୍ଚ ଆମ ଦେଶରେ କଲମର ସ୍ୱାଧୀନତା ସ୍ୱୀକୃତ ହୋଇନାହିଁ । ବରଂ ଏଠାରେ ସମ୍ପାଦକଙ୍କ ମର୍ଜି ମୁତାବକ ସମ୍ବାଦ ଲେଖିବାକୁ ପଡ଼େ ।

ଏହି ପ୍ରସଙ୍ଗରେ ଡକ୍ଟର ହରେକୃଷ୍ଣ ମହତାବ ଲେଖିଛନ୍ତି—"The correspondents of the newspapers have to the line of the editors as a general rule, but there are correspondents who true to their profession, give out news and views faithfully." ସାମ୍ବାଦିକତା କ୍ଷେତ୍ରରେ ସବୁବେଳେ ବୃତ୍ତିଗତ ନିଷ୍ଠା ପ୍ରକାଶ ପାଇବା ଉଚିତ ।

ବିଭିନ୍ନ ସମୟରେ ପ୍ରଶାସନିକ ଓ ନ୍ୟସ୍ତସ୍ୱାର୍ଥ ଶକ୍ତିର ଚାପରେ ସାମ୍ବାଦିକ ଦବିଯାଇନାହିଁ କିମ୍ବା ତାର କଣ୍ଠରୋଧ ହୋଇନାହିଁ । ଜରୁରୀ ପରିସ୍ଥିତି କାଳରେ ସ୍ୱୟଂ ଡକ୍ଟର ମହତାବ ଅସାଧାରଣ ସାହସ ପ୍ରଦର୍ଶନ କରିଥିଲେ ।

□□□

# ସମ୍ବାଦ-ଲେଖନ କଳା

ସମ୍ବାଦ-ଲେଖନ ଏକ ପ୍ରଗତିଶୀଳ କଳା । ଏଥିଲାଗି କୌଣସି ନିର୍ଦ୍ଦିଷ୍ଟ ଶୈଳୀ ଅଥବା କୌଣସି ଧରାବନ୍ଧା ନିୟମ ପ୍ରବର୍ତ୍ତିତ ହେବାର ଅବକାଶ ନଥିଲେ ମଧ୍ୟ କେତେକ ସାଧାରଣ ସ୍ୱୀକୃତ ଶୈଳୀ ଓ ଆଙ୍ଗିକରେ ସମ୍ବାଦ ପ୍ରସ୍ତୁତ କରାଯାଏ ।

ସମ୍ବାଦ, ବିବରଣୀ, ଲେଖା, ସାକ୍ଷାତକାର, ଜୀବନୀ ଓ ବ୍ୟକ୍ତିତ୍ୱ ପ୍ରଭୃତିର ଲେଖନ କଳାରେ ସାମାନ୍ୟ ତାରତମ୍ୟ ପରିଲକ୍ଷିତ ହୁଏ । ସେହିପରି ସମ୍ବାଦପତ୍ର, ରେଡ଼ିଓ ତଥା ଟେଲିଭିଜନ ପ୍ରଭୃତି ନିମନ୍ତେ ଭିନ୍ନ ଭିନ୍ନ ଲେଖନ କଳାର ପ୍ରୟୋଗ କରାଯାଇଥାଏ ।

ସାମ୍ବାଦିକତାର ପ୍ରତ୍ୟେକ ସୃଷ୍ଟିରେ କେତେକ ସାଧାରଣ ଶୃଙ୍ଖଳା ଆଚରିତ ହୁଏ ଓ ଏହାକୁ ପ୍ରାଥମିକ ଆବଶ୍ୟକତା ବୋଲି ମଧ୍ୟ କୁହାଯାଇ-ପାରେ ।

ପ୍ରସ୍ତୁତ ବିଷୟର ବର୍ଣ୍ଣନା ଶୈଳୀ ସାବଲୀଳ ତଥା ଶବ୍ଦ ସଂଯୋଜନା ସୁନିୟୋଜିତ ହେବା ଆବଶ୍ୟକ । ଭାଷାଗତ ଶୁଦ୍ଧତା, ବିଷୟର ମାଧୁର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ବୃଦ୍ଧି କରିବାରେ ସହାୟକ ହୋଇଥାଏ । ପ୍ରସ୍ତୁତ ବିଷୟ ସୁଖ-ପାଠ୍ୟ ତଥା ସୁବୋଧ୍ୟ ହେବା ସଙ୍ଗେ ସଙ୍ଗେ ବକ୍ତବ୍ୟ ଅତି ସ୍ପଷ୍ଟ ଓ ଲୌକିକ ଭାଷାରେ ହେବା ଆବଶ୍ୟକ । କଠିନ ଶବ୍ଦ ଅଥବା ଅଜଣା ତଗଡ଼ମାନଙ୍କର ପ୍ରୟୋଗ କରିବା ଉଚିତ ନୁହେଁ ଓ ଏପରି ସ୍ଥଳେ ବିଷୟର ଧାରା ବର୍ଣ୍ଣନାକୁ ଅବ୍ୟାହତ ରଖାଯାଇ, ସେଗୁଡ଼ିକର ସଂକ୍ଷିପ୍ତ ବ୍ୟାଖ୍ୟା କରାଯିବା ଆବଶ୍ୟକ । ବାକ୍ୟ ଗଠନ ଏକ ପ୍ରଧାନ କାର୍ଯ୍ୟ ଓ ଯଥାସମ୍ଭବ ଛୋଟ ଛୋଟ ବାକ୍ୟ ବ୍ୟବହୃତ ହେବା ଆବଶ୍ୟକ । ବିଷୟବସ୍ତୁର ଉପସ୍ଥାପନ ନମ୍ର, କୋମଳ ଓ ପ୍ରସଙ୍ଗ ପ୍ରତି ଅନୁଗତ ହେବା ଆବଶ୍ୟକ । ତାହା କୌଣସିମତେ "ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ" ଭଳି ହେବ ନାହିଁ କିମ୍ବା ବିଷୟ

ବହିର୍ଭୂତ ହେବ ନାହିଁ । ପ୍ରସ୍ତୁତ ବିଷୟର ବର୍ଣ୍ଣନା ସବୁବେଳେ ଯଥାସମ୍ଭବ ନିରପେକ୍ଷ ହେବ ତଥା ଅନୁରଞ୍ଜିତ ହେବନାହିଁ । ସାମ୍ବାଦିକ ନିଜେ ପ୍ରତ୍ୟକ୍ଷ ଭାବରେ ଜଡ଼ିତ ବିଷୟ ସମ୍ବାଦ ଆକାରରେ ପରିବେଷଣ କରିବା ମଧ୍ୟ ଶୋଭନୀୟ ନୁହେଁ । ଲେଖନ ପୂର୍ବରୁ ବିଷୟବସ୍ତୁର ପରିକଳ୍ପନା କରାଯିବା ଆବଶ୍ୟକ ଓ ସାମାଜିକ ତଥା ଜାତୀୟ ସ୍ୱାର୍ଥ ପ୍ରତି ଦୃଷ୍ଟି ଦିଆଯିବା ଆବଶ୍ୟକ ।

ସମ୍ବାଦ ପ୍ରସ୍ତୁତି ସମୟରେ ଅଭିଜ୍ଞ ସାମ୍ବାଦିକମାନଙ୍କ ଅପେକ୍ଷା ସାମ୍ବାଦିକତା କ୍ଷେତ୍ରରେ ନୂତନ ଭାବରେ ପ୍ରବେଶ କରିଥିବା ଯୁବସାମ୍ବାଦିକ-ମାନେ ସ୍ୱାଭାବିକ ଭାବରେ ଅଧିକ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । କୌଣସି ସଭାସମିତିକୁ ଗଲେ ଏହି ସାମ୍ବାଦିକମାନେ ପୃଷ୍ଠା ପରେ ପୃଷ୍ଠା ଲେଖି ଆଣନ୍ତି । ଏପରିକି ଓ୍ୱାର୍ଡମେମ୍ବରଙ୍କ ଭାଷଣ ମଧ୍ୟ ବିସ୍ତୃତ ଭାବରେ ଲେଖିଥାଆନ୍ତି । କିନ୍ତୁ ସମ୍ବାଦପତ୍ରରେ ଯେ ସୀମିତ ସ୍ଥାନ ରହିଥାଏ ତାହା ସେମାନେ ମନେରଖନ୍ତି ନାହିଁ ।

ସମ୍ବାଦପତ୍ର କାର୍ଯ୍ୟାଳୟକୁ ବିଭିନ୍ନ ସମ୍ବାଦ ଭିନ୍ନ ଭିନ୍ନ ସୂତ୍ରରୁ ଆସିଥାଏ । ସେଥିମଧ୍ୟରୁ କେତେକ ସମ୍ବାଦ ଏହିପରି—"ବାଲିଚନ୍ଦ୍ରପୁରର ଶାସ୍ତ୍ରୀ ଯୁବକ-ସଙ୍ଘ ପକ୍ଷରୁ ପ୍ରଥମ ଥର ପାଇଁ ବିପୁଳ ଉତ୍ସାହ ଓ ଉନ୍ମାଦନା ମଧ୍ୟରେ ବୃକ୍ଷରୋପଣ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ଆଖ-ପାଖ ଅଞ୍ଚଳର ବହୁ ବିଶିଷ୍ଟ ବ୍ୟକ୍ତି ଯୋଗଦେଇ ମୋଟ ୩୭ଟି ବୃକ୍ଷରୋପଣ କରିଥିଲେ ।

ଉତ୍ସବରେ ସଭାପତିତ୍ୱ କରିଥିଲେ ଶାସ୍ତ୍ରୀ-ଯୁବକ ସଙ୍ଘର ସଭାପତି ଶ୍ରୀ ପ୍ରମୋଦ କୁମାର ମହାନ୍ତି । ସେ କହିଲେ ଯେ, ବାଲିଚନ୍ଦ୍ରପୁର ଅଞ୍ଚଳର ଗୌରବମୟ ପରମ୍ପରାରେ ବୃକ୍ଷରୋପଣର ନୂତନ ପର୍ବ ଯୋଡ଼ା ହୋଇଗଲା । ଏହା ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ସଙ୍ଘର ସାଧାରଣ ସମ୍ପାଦକ ଶ୍ରୀ ମଧୁବନ ଦାସ ସମ୍ପାଦକୀୟ ବିବ-ରଣୀ ପାଠକରି କହିଲେ ଯେ ବୃକ୍ଷରୋପଣ କାର୍ଯ୍ୟକ୍ରମ ଲାଗି ସଙ୍ଘ ପକ୍ଷରୁ ବହୁବର୍ଷ ହେଲା ଉଦ୍ୟମ ହୋଇଆସୁଥିଲା । ଏ ବର୍ଷ ତାହା ସଫଳ ହୋଇଛି ।

ଏହା ବୃକ୍ଷରୋପଣ ଦ୍ୱାରା ବର୍ଷା ହେବ ଓ ପ୍ରକୃତରେ ଭାରସାମ୍ୟ ସୁରକ୍ଷିତ ରହିବ । ଏ ବର୍ଷ ଆଜି ସୁଯୋଗ ନ ମିଳିବାରୁ ମାତ୍ର ୩୭ଟି ବୃକ୍ଷରୋପଣ କରାଯାଇଛି । ଆସନ୍ତାବର୍ଷ ଅନେକ ବୃକ୍ଷରୋପଣ କରାଯିବ । ଏଥିଲାଗି ଗ୍ରାମ ପଞ୍ଚାୟତ, ପଞ୍ଚାୟତ ସମିତି, ଜିଲ୍ଲା କର୍ତ୍ତୃପକ୍ଷ, ରାଜ୍ୟସରକାର ଏବଂ କେନ୍ଦ୍ର ସରକାର ସମସ୍ତେ ସାହାଯ୍ୟ କରିବେ ବୋଲି ଆଶା । ଆମ ସଂଘ ନାନା ଅସୁବିଧା ମଧ୍ୟରେ ଗତି କରୁଛି । ନିଜର ଘର ବୋଲି କିଛି ନାହିଁ । ସରକାର ଆମ ପାଇଁ ଘରଟିଏ ତିଆରି କରିଦେଲେ ଉପକୃତ ହେବୁ । ପୂର୍ବରୁ ଜିଲ୍ଲାପାଳ, ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରପତିଙ୍କ ନିକଟକୁ ଏ ସମ୍ବନ୍ଧ ଦରଖାସ୍ତ ପଠାଇଦିଆଯାଇଛି । ଏ ଦିଗରେ ସ୍ଥାନୀୟ ବି. ଡ଼ି. ଓ. ଉଦ୍ୟମ କଲେ ଭଲ ହେବ ।

ସ୍ଥାନୀୟ ବି.ଡ଼ି.ଓ. ଶ୍ରୀ ମକରଧ୍ୱଜ ପଣ୍ଡା ମୁଖ୍ୟ ଅତିଥି ଭାବରେ ଯୋଗଦାନ କରିଥିଲେ । ସେ ତାଙ୍କର ସାରଗର୍ଭକ ଭାଷଣରେ କହିଲେ ଯେ ବୃକ୍ଷରୋପଣ ଏକ ଉପାଦେୟ ବିଷୟ । ସେ ଆହୁରି କହିଲେ ଯେ ଶାସ୍ତ୍ରୀ ଯୁବକ-ସଂଘ ଏକ ପ୍ରଶଂସନୀୟ କାର୍ଯ୍ୟ କରିଛି । ସେ ପୁଣି କହିଲେ ଯେ ଶାସ୍ତ୍ରୀ ଯୁବକ ସଂଘର ଘର ତିଆରି ଲାଗି ଉଦ୍ୟମ କରାଯିବ । ରାଜ୍ୟ ସରକାର ବ୍ଲକ୍‌ରେ ବିଭିନ୍ନ ଉନ୍ନୟନ କାର୍ଯ୍ୟକ୍ରମ ଲାଗି ବିହିତ ବ୍ୟବସ୍ଥା ଗ୍ରହଣ କରୁଛନ୍ତି ଇତ୍ୟାଦି । ସଂଘର ଉପସଭାପତି ଶ୍ରୀ କୈବଲ୍ୟ ସାହୁ ସମ୍ମାନିତ ଅତିଥି ଶ୍ରୀ ଲିଙ୍ଗରାଜ ମେହେରଙ୍କର ପରିଚୟ ପ୍ରଦାନ କରି କହିଥିଲେ ଯେ ସେ ସ୍ଥାନୀୟ ଦୁର୍ଗାପୂଜା କମିଟିର ଜଣେ ସକ୍ରିୟ ସଦସ୍ୟ । ବି. ଡ଼ି. ଓ. ଶ୍ରୀ ପଣ୍ଡାଙ୍କ କାର୍ଯ୍ୟଦକ୍ଷତା ସମ୍ପର୍କରେ ସମସ୍ତେ ଜାଣନ୍ତି ବୋଲି ସେ କହିଥିଲେ ।

ଶେଷରେ ଓ୍ୱାର୍ଡମେମ୍ବର ଶ୍ରୀକାନ୍ତ ରାଉ ଧନ୍ୟବାଦ ଅର୍ପଣ କରିଥିଲେ । ବହୁମୂଲ୍ୟ ସମୟ ନଷ୍ଟକରି ଉତ୍ସବରେ ଯୋଗଦାନ କରିଥିବାରୁ ମୁଖ୍ୟ ଅତିଥି ଓ ସମ୍ମାନିତ ଅତିଥିଙ୍କୁ ଧନ୍ୟବାଦ ଜଣାଇବା ସଙ୍ଗେ ସଙ୍ଗେ ସେମାନଙ୍କର ସହଯୋଗ ଅବ୍ୟାହତ ରହିବ ବୋଲି ଆଶା ପ୍ରକାଶ କରିଥିଲେ । ପ୍ରଧାନ ଇଲେକ୍ଟ୍ରିକାଲ୍ସ କର୍ତ୍ତୃପକ୍ଷ ମାଇକ୍ ସେଟ ଲଗାଇଥିବାରୁ ଧନ୍ୟବାଦର ପାତ୍ର ବୋଲି ସେ କହିଥିଲେ ।

ଏହି ଉତ୍ସବରେ ଆଖପାଖର ବହୁ ଲୋକ ଯୋଗ ଦେଇଥିଲେ । ଅନ୍ୟମାନଙ୍କ ମଧ୍ୟରେ ସର୍ବଶ୍ରୀ ଅମୁକ ଅମୁକ ମୋଟ ୫୦ ଜଣ ବ୍ୟକ୍ତି ସ୍ୱତନ୍ତ୍ର ଭାବରେ ନିମନ୍ତ୍ରିତ ହୋଇଥିଲେ । ବର୍ଷା ହେଉଥିବାରୁ ବୃକ୍ଷରୋପଣ ବେଳେ ପାଣି ଦରକାର ପଡ଼ିନଥିଲା ।"

ଏହିପରି ସମ୍ବାଦ ଲେଖନ ଅଯୋଗ୍ୟତା ନୁହେଁ, ବରଂ ଏହାକୁ ଅନଭିଜ୍ଞତା ବୋଲି କୁହାଯାଇପାରେ । କ୍ରମେ ଅଭ୍ୟସ୍ତ ସାମ୍ବାଦିକର ସମ୍ବାଦ ପ୍ରସ୍ତୁତି ଶୈଳୀରେ ସ୍ୱତଃ ପରିବର୍ତ୍ତନ ଘଟେ ।

ଉକ୍ତ ସମ୍ବାଦଟି ସମ୍ବାଦପତ୍ର ଅଫିସରେ ପହଞ୍ଚିବା ପରେ ଡେସ୍କରେ କାର୍ଯ୍ୟକରୁଥିବା ସାମ୍ବାଦିକମାନେ କାଟଛାଣ୍ଟ କରି ଆବଶ୍ୟକୀୟ ଖଣ୍ଡରେ ସମ୍ପାଦନା କରନ୍ତି ଓ ତାହା ସେହି ଅନୁସାରେ ସମ୍ବାଦପତ୍ରରେ ପ୍ରକାଶିତ ହୁଏ । ସଂକ୍ଷିପ୍ତ ଆକାରରେ ସମ୍ବାଦଟି ପ୍ରକାଶ ପାଇବା ପରେ ଅନେକ ସମୟରେ ସମ୍ବାଦଦାତାଙ୍କ ନିକଟରୁ ଏହିପରି ପତ୍ର ଆସେ—"ମହାଶୟ, ବୃକ୍ଷରୋପଣ କାର୍ଯ୍ୟକ୍ରମ ସମ୍ବାଦଟି ସଂକ୍ଷେପରେ ପ୍ରକାଶ ପାଇଥିବାରୁ ବାଲି-ଚନ୍ଦ୍ରପୁର ଅଞ୍ଚଳରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଛି । ପ୍ରକାଶିତ ସମ୍ବାଦରେ ଅନେକ ଲୋକଙ୍କ ନାମ ଛାଡ଼ିଦିଆଯାଇଛି । ସେମାନେ ସମସ୍ତେ କ୍ଷମତାସୀନ ଦଳର ସକ୍ରିୟ ସଦସ୍ୟ ଅଟନ୍ତି । ସମ୍ବାଦଟି ଆଉଥରେ ପ୍ରକାଶ କରି ବାଧିତ କରିବା ହେବେ । ଇତି । ସାମ୍ବାଦଦାତା ।"

ବାସ୍ତବରେ କେଉଁ ସମ୍ବାଦକୁ କେତେ ଗୁରୁତ୍ୱ ଦିଆଯିବା ଆବଶ୍ୟକ ତାହା ନିର୍ଣ୍ଣୟ କରାଯିବା ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ଅନାବଶ୍ୟକ ବିସ୍ତୃତ ବର୍ଣ୍ଣନା ସମ୍ବାଦର ମୌଳିକତା, ଗତିଶୀଳତା ଓ ମର୍ଯ୍ୟାଦା ହ୍ରାସ କରିଥାଏ ।

ସମ୍ବାଦ ବୋଇଲେ କ'ଣ ? କୌଣସି ବ୍ୟକ୍ତି ଅଥବା ସାମାଜିକ ଘଟଣାର ସଂକ୍ଷିପ୍ତ ବିବରଣୀକୁ ସମ୍ବାଦ ବୋଲି କୁହାଯାଇପାରେ । ସମ୍ବାଦ ଯେତିକି କ୍ଷୁଦ୍ର ଏବଂ ସାରଗର୍ଭକ ହେବ, ତାହା ପାଠକମାନଙ୍କୁ ସେହିପରି ଆକର୍ଷିତ କରିବ ।

ପ୍ରତ୍ୟେକ ସମ୍ବାଦରେ କ'ଣ ? କେତେବେଳେ ? କେଉଁଠାରେ ? କିଏ ? ଓ କିପରି ? ପ୍ରଭୃତି ପ୍ରଶ୍ନର ଉତ୍ତର ରହିବା ଆବଶ୍ୟକ ।

ଧରନ୍ତୁ ଆପଣଙ୍କ ଜଣେ ସାମ୍ବାଦିକ ଏକ ଶ୍ରମମଙ୍ଗଳ କେନ୍ଦ୍ରର ଉଦ୍‌ଘାଟନ ଉତ୍ସବ ସନ୍ଧାନ୍ତ ସମ୍ବାଦ ସଂଗ୍ରହ କରିବାକୁ ଗଲେ । ତାଙ୍କର ସମ୍ବାଦଟି ସଂକ୍ଷେପରେ ଏହିପରି ହେବା ଉଚିତ । "ସମ୍ବଲପୁର ତା ୫ । ୧୦- ଆଜି ପୂର୍ବାହ୍ନରେ ସ୍ଥାନୀୟ କମଳବଜାର ନିକଟରେ ଏକ ଶ୍ରମମଙ୍ଗଳ କେନ୍ଦ୍ର ଜିଲ୍ଲାପାଳ ଶ୍ରୀ ହାର୍ଦ୍ଧ୍ୟା ସିଂ ଚହରଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଛି ।

ଏ ଉପଲକ୍ଷେ ଆୟୋଜିତ ଉତ୍ସବରେ ଭାଷଣ ଦେଇ ଜିଲ୍ଲାପାଳ ଶ୍ରୀ ଚହର କହିଲେ ଯେ ଏହାଦ୍ୱାରା ପ୍ରାୟ ଏକ ହଜାର ଶ୍ରମିକ ଉପକୃତ ହେବେ । ଏଠାରେ ଅନ୍ୟାନ୍ୟ ସଭାସମିତି ମଧ୍ୟ ହୋଇପାରିବ ଓ ସାଂସ୍କୃତିକ ଚେତନାର ବିକାଶ କ୍ଷେତ୍ରରେ ସହାୟକ ହେବ ।

ଏହି ଉତ୍ସବରେ ନଗରପାଳ ଶ୍ରୀ ସଂଗ୍ରାମ କେଶରୀ ସାହାଣୀ ଅଧ୍ୟକ୍ଷତା କରିଥିଲେ ।

ଜିଲ୍ଲା ଶ୍ରମାଧିକାରୀ ଶ୍ରୀ ରାମଚନ୍ଦ୍ର ବେହେରା ସୂଚନା ଦେଇ କହିଲେ ଯେ ପ୍ରାୟ ଦୁଇ ଲକ୍ଷ ଟଙ୍କା ବ୍ୟୟରେ ରାଜ୍ୟ ଶ୍ରମବିଭାଗ କର୍ତ୍ତୃପକ୍ଷଙ୍କ ଦ୍ୱାରା ଏହା ନିର୍ମିତ ହୋଇଛି । ବହୁ ଦିନରୁ ଏହାର ଆବଶ୍ୟକତା ଅନୁଭୂତ ହେଉଥିଲା ।

ଏହି ଶ୍ରମମଙ୍ଗଳ କେନ୍ଦ୍ର ଦାୟିତ୍ୱରେ ଥିବା ସହକାରୀ ଶ୍ରମାଧିକାରୀ ଶ୍ରୀ ସଦାନନ୍ଦ ଚକ୍ରବର୍ତ୍ତୀ ଉତ୍ସବ ଶେଷରେ ଧନ୍ୟବାଦ ଅର୍ପଣ କରିଥିଲେ । ଏଥିରେ ସହରର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଯୋଗଦାନ କରିଥିଲେ ।"

ଏହା ହିଁ ଆମର ଆବଶ୍ୟକୀୟ ସମ୍ବାଦ । ସମ୍ବାଦପତ୍ରରେ ଉପଲବ୍ଧ ସ୍ଥାନକୁ ଲକ୍ଷ୍ୟକରି ଏଥିରେ ଅଧିକ ବିଷୟ ଯୋଡ଼ାଯାଇପାରେ କିମ୍ବା ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇପାରେ ।

ସମ୍ବାଦ ସ୍ଥାନୀୟ ହେଉ କିମ୍ବା ଜାତୀୟ ହେଉ ଅଥବା ଆନ୍ତର୍ଜାତିକ ହେଉ ବା ଯେ କୌଣସି ବିଷୟରେ ହୋଇଥାଉ, ତହିଁରେ ପୂର୍ବୋକ୍ତ ପ୍ରଶ୍ନଗୁଡ଼ିକର ଉତ୍ତର ରହିବ । ଏହାଦ୍ୱାରା ସମ୍ବାଦର ଦୃଢ଼ୀକରଣ ହେବ ଏବଂ ଭବିଷ୍ୟତରେ ଗବେଷଣା ପ୍ରଭୃତି କ୍ଷେତ୍ରରେ ସଠିକ ତଥ୍ୟ ଯୋଗାଇ ପାରିବ ।

କୌଣସି ବ୍ୟକ୍ତିଙ୍କର ମୃତ୍ୟୁ ସମ୍ବାଦ ଲେଖିବାକୁ ହେଲେ ମୃତ ବ୍ୟକ୍ତିଙ୍କ ପୁରାନାମ, ସେ କ'ଣ କରୁଥିଲେ, କେଉଁ ପରିସ୍ଥିତିରେ ତାଙ୍କର ମୃତ୍ୟୁହେଲା, ମୃତ୍ୟୁବେଳକୁ ତାଙ୍କର ବୟସ କେତେ ହୋଇଥିଲା, ତାଙ୍କ ପରିବାରରେ ଆଉ କିଏ କିଏ ଅଛନ୍ତି ଓ ତାଙ୍କର ବିଶେଷତ୍ୱ କ'ଣ ଥିଲା ଇତ୍ୟାଦି ବିଷୟରେ ଲେଖିବାକୁ ହେବ । ସମ୍ବାଦପତ୍ରରେ ପ୍ରକାଶନାର୍ଥେ ଅଧିକ ସ୍ଥାନ ଥିଲେ ତାଙ୍କର ସଂକ୍ଷିପ୍ତ ଜୀବନୀ ଓ ଶୋକବାର୍ତ୍ତା ପ୍ରକାଶିତ ରହିବ । ସେହିପରି ଦୁର୍ଘଟଣା ସମ୍ବାଦରେ ଏଥିସହ ଦୁର୍ଘଟଣାର କାରଣ ସମ୍ବନ୍ଧ ଉଲ୍ଲେଖ କରାଯିବ । ସବୁବେଳେ ମନେ ରଖିବା କଥା, ଦେଶ, କାଳ ଓ ପାତ୍ର ଭିତ୍ତିରେ ସମ୍ବାଦର କଳେବର ତଥା ଘଟଣାର ଗୁରୁତ୍ୱ ନିରୂପଣ କରାଯାଏ ।

ସମ୍ବାଦ ଲେଖନ ପ୍ରାରମ୍ଭରେ ସମଗ୍ର ସମ୍ବାଦଟିର ସାରାଂଶ ଲିପିବଦ୍ଧ କରାଯିବା ଆବଶ୍ୟକ । ସେଥିଲାଗି ପ୍ରତ୍ୟେକ ସମ୍ବାଦପତ୍ରର ମୁଖ୍ୟ ସମ୍ବାଦରେ ପ୍ରଥମ ପରିଚ୍ଛେଦକୁ ଗୁରୁତ୍ୱ ଦିଆଯାଇଥାଏ ଓ ସମ୍ବାଦପତ୍ରରେ ଏହାକୁ ଏଣ୍ଟ୍ରୋ (Entro) କୁହାଯାଇଥାଏ ।

ଏଠାରେ ଏକ ଏଣ୍ଟ୍ରୋର ଉଦାହରଣ ପ୍ରଦାନ କରାଯାଉଛି । "ବେଲଗ୍ରେଡ଼ ତା ୨୨ । ୯—ଦକ୍ଷିଣ ଆଫ୍ରିକାରୁ ବର୍ଣ୍ଣବୈଷମ୍ୟବାଦର ବିଲୋପ ନିମନ୍ତେ ଏଠାରେ ଅନୁଷ୍ଠିତ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ରସମୂହର ଶିଖର ସମ୍ମିଳନୀରେ ଗୃହୀତ ଏକ ସର୍ବସମ୍ମତ ପ୍ରସ୍ତାବରେ ଆହ୍ୱାନ ଦିଆ-ଯାଇଛି । ଗତକାଲ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କ ଭାଷଣ ପରେ ଏହି ତିନିଦିନିଆ ସମ୍ମିଳନୀ ଉଦ୍‌ଯାପିତ ହୋଇଯାଇଛି । ପରବର୍ତ୍ତୀ ବୈଠକ ନୂଆଦିଲ୍ଲୀରେ ଆୟୋଜିତ ହେଉବୋଲି ଭାରତର ପ୍ରସ୍ତାବ ଗୃହୀତ ହୋଇଛି ।" ଏଣ୍ଟ୍ରୋ ପରେ ସମ୍ବାଦର ବିଶେଷ ବିବରଣୀ ଲେଖାଯାଏ ।

ଜନସାଧାରଣଙ୍କୁ ସଚେତନ କରିବା ସମ୍ବାଦପତ୍ରର ଦାୟିତ୍ୱ ହୋଇଥିବାରୁ ତଥା ପ୍ରତ୍ୟେକ ସମ୍ବାଦପତ୍ର ସବୁ ଘଟଣାବଳୀ ସମ୍ବନ୍ଧ ସମ୍ବାଦ ପରିବେଷଣ କରିବା ସମ୍ଭବପର ହୋଇନଥିବାରୁ ବିଭିନ୍ନ ସମ୍ବାଦ ସରବରାହ ସଂସ୍ଥା ତଥା ନିଜସ୍ୱ ସମ୍ବାଦଦାତା ଓ ଅନ୍ୟାନ୍ୟ ସୂତ୍ରରୁ ପ୍ରାପ୍ତ ସମ୍ବାଦଗୁଡ଼ିକ ମଧ୍ୟରୁ ଉତ୍ତମ ଭାବରେ ଚୟନ ପୂର୍ବକ ସମ୍ବାଦ ପରି-

ବେଷଣ କରାଯିବା ଆବଶ୍ୟକ । କାରଣ ସମ୍ବାଦପତ୍ରର କଳେବର ସୀମିତ ଓ ଜନସାଧାରଣଙ୍କ ଆଶା ଆକାଂକ୍ଷା ଅପରିମିତ । ଯେଉଁ ସମ୍ବାଦଗୁଡ଼ିକ ଜନଜୀବନର ଯଥାର୍ଥ ପ୍ରତିଫଳନରେ ସହାୟକ ହେଉଥିବ, ସେଗୁଡ଼ିକର ପ୍ରକାଶନ ଅଗ୍ରାଧିକାର ଭିତ୍ତିରେ ହେବା ଆବଶ୍ୟକ ।

ସମ୍ବାଦଗୁଡ଼ିକ ଯେ ସବୁବେଳେ କ୍ଷୁଦ୍ର ହେବ, ତାହା ନୁହେଁ, ଅନେକ ଘଟଣାର ବର୍ଣ୍ଣନା ଦୀର୍ଘ କିମ୍ବା ଅତି ଦୀର୍ଘ ମଧ୍ୟ ହୋଇପାରେ । ପ୍ରାସଙ୍ଗିକତା ଦୃଷ୍ଟିରୁ ଏହା ସ୍ଥିର କରାଯାଇଥାଏ ।

ସାମାଜିକ ପ୍ରକ୍ରିୟାର ଫଳାଫଳ ଉପରେ ଆଲୋକପାତ କରେ ସମ୍ବାଦ ଓ ପ୍ରକ୍ରିୟା ସମ୍ବନ୍ଧୀୟ ବିଶଦ ବିବରଣୀ ପ୍ରଦାନ କରେ ନିବନ୍ଧଧର୍ମୀ ବିବରଣୀ ।

ସମ୍ବାଦଗୁଡ଼ିକରେ ସମସ୍ୟାର ବାସ୍ତବଧର୍ମୀ ବିଶ୍ଳେଷଣ ହେବା ଆବଶ୍ୟକ । ପ୍ରାସଙ୍ଗିକ ଗୁରୁତ୍ୱ ଦୃଷ୍ଟିରୁ ଯେକୌଣସି ବିଷୟର ଅତ୍ୟାବଶ୍ୟକ ଦିଗ ଉପରେ ଆଲୋକପାତ କରାଯିବା ଆବଶ୍ୟକ । ଏହି କ୍ଷେତ୍ରରେ ସଫଳତା ହାସଲ ଲାଗି ସାମ୍ବାଦିକର ପ୍ରତ୍ୟକ୍ଷ ଜ୍ଞାନ ଆବଶ୍ୟକ । ଶୁଣାକଥାରେ ବିଭ୍ରାନ୍ତ ହେବାର ଯଥେଷ୍ଟ ଆଶଙ୍କା ରହିଥାଏ ।

କୌଣସି ଉତ୍ସବାନୁଷ୍ଠାନ କିମ୍ବା ଘଟଣାବଳୀ ସମ୍ବନ୍ଧୀୟ ବିବରଣୀ ପ୍ରସ୍ତୁତ କରିବା ସମୟରେ ସ୍ୱତନ୍ତ୍ର ଗଠନ ଶୈଳୀର ପ୍ରୟୋଗ କରାଯାଏ । ବିବରଣୀ ସମ୍ବାଦ ସମ୍ପର୍କିତ ବିଷୟ ହୋଇଥିଲେ ହେଁ ଏହା ଅଧିକାଂଶତଃ ନିବନ୍ଧଧର୍ମୀ । ଏଥିରେ ବିସ୍ତୃତ ବର୍ଣ୍ଣନାର ଅବକାଶ ରହିଥାଏ ।

ଉଦାହରଣ ସ୍ୱରୂପ ଧରନ୍ତୁ ଆଜି ରାଜ୍ୟର ପ୍ରାଥମିକ ଶିକ୍ଷକମାନଙ୍କୁ ସରକାରୀ କର୍ମଚାରୀ ଭାବରେ ଗ୍ରହଣ କରାଯିବାଲାଗି ବିଧାନସଭାରେ ଏକ ପ୍ରସ୍ତାବ ଗୃହୀତ ହେଲା । ବିବରଣୀରେ କେବଳ "ପ୍ରସ୍ତାବ ଗୃହୀତ ହେଲା" ବୋଲି ଲେଖିଦେଲେ ତାହା ଯଥେଷ୍ଟ ହେବନାହିଁ । କିଭଳି ଭାବରେ ପ୍ରସ୍ତାବ ଗୃହୀତ ହେଲା, ପ୍ରସ୍ତାବ କିଏ ଆଗତ କରିଥିଲେ, କେଉଁ ସଦସ୍ୟମାନେ ଆଲୋଚନାରେ ଅଂଶ ଗ୍ରହଣ କଲେ ଓ କ'ଣ କହିଲେ, ପ୍ରସ୍ତାବ ସପକ୍ଷରେ

ଓ ବିପକ୍ଷରେ କଉଁଲ ମତ ପ୍ରକାଶ ପାଇଲ, ବିଭାଗୀୟ ମନ୍ତ୍ରୀ ଆଲୋଚନାର ଉତ୍ତର ଦେଇ କ'ଣ କହିଲେ, ପ୍ରସ୍ତାବଟିର ପୂର୍ବାପର ସଙ୍ଗତି କ'ଣ, ପ୍ରସ୍ତାବ ଗ୍ରହଣ ଲାଗି କେଉଁ ନିଆଗଲା କି ସର୍ବସମ୍ମତିକ୍ରମେ ଗୃହୀତ ହେଲା ଇତ୍ୟାଦି ବିଷୟର ବର୍ଣ୍ଣନା ବିବରଣୀରେ ଲିପିବଦ୍ଧ ହେବା ଆବଶ୍ୟକ । ବିବରଣୀରେ ଯେଉଁସବୁ ବିଷୟ ଉଲ୍ଲେଖ କରାଯାଇଥାଏ, ସମ୍ବାଦରେ ସେସବୁକୁ ଅନ୍ତର୍ଭୁକ୍ତ କରିବା ସମ୍ଭବ ହୁଏନାହିଁ ।

କୌଣସି ଆଲୋଚନାରେ ବହୁ ସଦସ୍ୟ ଅଂଶ ଗ୍ରହଣ କରିଥିଲେ ସେମାନଙ୍କର ବକ୍ତବ୍ୟ ପୂର୍ଣ୍ଣରୂପରେ ସମ୍ବାଦରେ ଦିଆଯାଇ ପାରେନାହିଁ । ସମ୍ବାଦରେ ସାଧାରଣତଃ ବୈଠକରେ ଗୃହୀତ ସାଧାରଣ ମତ ତଥା ଆଲୋଚକମାନଙ୍କର ନାମ ପ୍ରକାଶ କରାଯାଇପାରେ । ଏହା ସଭାସମିତି, ଉତ୍ସବାନୁଷ୍ଠାନ, ଆଲୋଚନାଚକ୍ର ପ୍ରଭୃତିର ବିବରଣୀ ଲେଖନ କ୍ଷେତ୍ରରେ ମଧ୍ୟ ପ୍ରଯୁଜ୍ୟ । ବିବରଣୀକୁ ସାମଗ୍ରିକ ଭାବରେ ଏକ ଅନୁସନ୍ଧାନମୂଳକ ଲେଖା (article) ଭାବରେ ଗ୍ରହଣ କରାଯାଇପାରେ ।

ପାଠକବର୍ଗ ଓ ସାମାଜିକ ପରିପ୍ରେକ୍ଷୀକୁ ଦୃଷ୍ଟିରେ ରଖି ତଥା ତାହାର ପରବର୍ତ୍ତୀ ପ୍ରତିକ୍ରିୟା ପରିପ୍ରେକ୍ଷୀରେ ବିବରଣୀ ପ୍ରସ୍ତୁତ କରାଯାଇ-ଥାଏ । ପ୍ରାସଙ୍ଗିକତା ରକ୍ଷା ମଧ୍ୟ ଏ କ୍ଷେତ୍ରରେ ଜରୁରୀ ଅଟେ । ଧରିନିଆଯାଉ ସମ୍ବଲପୁର ଜିଲ୍ଲା ସାମ୍ବାଦିକ ସଂଘର ବାର୍ଷିକ କର୍ମକର୍ତ୍ତା ନିର୍ବାଚନ ନାରୀସେବା ସଦନରେ ଅନୁଷ୍ଠିତ ହେଲା । ଏହି ନିର୍ବାଚନର ବିବରଣୀ ଲେଖନ ସମୟରେ ନାରୀସେବା ସଦନ ନିର୍ମାଣର ଇତିହାସ ବର୍ଣ୍ଣନା ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ ।

ବିବରଣୀର ପ୍ରାରମ୍ଭରେ ସ୍ଥାନ, କାଳ, ପାତ୍ର ଓ ବିଷୟ ବର୍ଣ୍ଣନାର ଉଦ୍ଦେଶ୍ୟ ତଥା ତାହାର ଶିରୋନାମାରେ ମଧ୍ୟ ଏହାର ସୂଚନା ରହିବ । ତା'ପରେ କ୍ରମାନୁସାରେ ଘଟଣା ପ୍ରବାହର ଉଲ୍ଲେଖ କରାଯିବ ଓ ଶେଷରେ ଉପସଂହାର ଲେଖାଯିବ । ଘଟଣାବଳୀ ସମ୍ପର୍କରେ ନିଜର ପ୍ରତ୍ୟକ୍ଷ ଅନୁଭୂତି ଯଦି କିଛି ଥାଏ, ତାହା ମଧ୍ୟ ଉଲ୍ଲେଖ କରାଯାଇପାରେ ।

ବିଭିନ୍ନ ଶିଳ୍ପସଂସ୍ଥା ସଂକ୍ରାନ୍ତ ବିବରଣୀ ପ୍ରସ୍ତୁତବେଳେ ସାଧାରଣ ପାଠକଙ୍କ ପକ୍ଷରେ ଦୁର୍ବୋଧ ତଥା ଅନାବଶ୍ୟକ ବୈଷୟିକ ପ୍ରକ୍ରିୟା ଓ

ବୈଷୟିକ ଶବ୍ଦର ବହୁଳ ବ୍ୟବହାର ଅନାବଶ୍ୟକ । ବିବରଣୀ ପ୍ରସ୍ତୁତ ପୂର୍ବରୁ ସାମ୍ବାଦିକ ସଂପୃକ୍ତ କଳକାରଖାନା ସଂପର୍କରେ ପ୍ରାଥମିକ ଜ୍ଞାତବ୍ୟ ତଥ୍ୟ ଜାଣିବା ଉଚିତ । ପୂର୍ବରୁ ପ୍ରକାଶିତ ବିବରଣୀ କିମ୍ବା ସେହି ସଂସ୍ଥାରେ କାର୍ଯ୍ୟକରୁଥିବା ଶ୍ରମିକ ସଙ୍ଗଠନ ପ୍ରଭୃତି ସୂତ୍ରରୁ ତଥ୍ୟ ସଂଗ୍ରହ କରି କର୍ତ୍ତୃପକ୍ଷଙ୍କ ସହ ସାକ୍ଷାତ ଆଲୋଚନା କରାଯାଇପାରେ । ପୁନଶ୍ଚ ବଡବଡ଼ ଶିଳ୍ପ ସଂସ୍ଥାର ସମସ୍ତ କାର୍ଯ୍ୟକଳାପ ବିଷୟରେ ଏକକ ବିବରଣୀ ନ ଲେଖି ପୃଥକ ପୃଥକ ଭାବରେ ନିର୍ଦ୍ଦିଷ୍ଟ ଦିଗ ଉପରେ ବିସ୍ତୃତ ତଥ୍ୟ ପ୍ରଦାନ କରା-ଗଲେ ତାହା ଅଧିକ ଉପାଦେୟ ହେବ । ଏଥିସହ ନିଜସ୍ୱ ଅନୁମାନ, ଅନୁଭବ ଓ ସମ୍ଭାବିତ ଦିଗ ଉପରେ ଆଲୋକପାତ ମଧ୍ୟ ଅତ୍ୟାବଶ୍ୟକ ଅଟେ । ପ୍ରାପ୍ତ ଅଥବା ସଂଗୃହୀତ ତଥ୍ୟ ଉପରେ ନିଜସ୍ୱ ପର୍ଯ୍ୟାଲୋଚନା ଅନେକ ନୂତନ ପଥ ଦେଖାଇବାରେ ସହାୟକ ହୁଏ ଏବଂ ବିବରଣୀର ବିଷୟ ପକ୍ଷପାତ ଦୋଷରୁ ମୁକ୍ତ ହୁଏ । ବସ୍ତୁତଃ ଅନେକ ବିଷୟ ବାହାରକୁ ଯେପରି ଜଣାପଡ଼େ, ସେପରି ନଥାଏ । ତେଣୁ ଏ ଦିଗ ପ୍ରତି ଅବହେଳା କରାଯିବା ଉଚିତ ନୁହେଁ ।

ବିବରଣୀ ଏକ ସାଧାରଣ ଉପସ୍ଥାପନା ନୁହେଁ । ଏଥିରେ ଅଭିମତ ପ୍ରକାଶନ, ପରିସ୍ଥିତି ସଂପର୍କରେ ଯଥାର୍ଥ କଳନା ଏବଂ ଆଲୋଚନା ସମାଲୋ-ଚନାର ଅବକାଶ ରହିଥାଏ । ନିଜକୁ ପ୍ରଥମ ପୁରୁଷ ଭାବରେ ଉପସ୍ଥାପନ କରି ବିବରଣୀ ବର୍ଣ୍ଣନା କଲେ ଏଥିରେ ଆତ୍ମାନୁଜ୍ଞାନର ପ୍ରତିଫଳନ ସମ୍ଭବ ହୋଇଥାଏ । କିନ୍ତୁ କୌଣସି ପରିସ୍ଥିତିରେ ବାସ୍ତବ ତଥ୍ୟଠାରୁ ଦୂରେଇ-ଯିବା ଉଚିତ ନୁହେଁ ।

ବିବରଣୀ ଲେଖନ ପୂର୍ବରୁ ସମସ୍ତ ଆବଶ୍ୟକୀୟ ତଥ୍ୟ ସଂଗ୍ରହ ପୂର୍ବକ ଲେଖନ ଶୈଳୀ ଓ ଆଙ୍ଗିକ ସ୍ଥିର କରାଯିବା ଆବଶ୍ୟକ । ପ୍ରାରମ୍ଭରେ ବିବରଣୀର ସାରାଂଶ ଅତି ସଂକ୍ଷେପରେ ବର୍ଣ୍ଣନା କରାଯିବା ଆବଶ୍ୟକ । ବିବରଣୀର ପ୍ରଥମ ପରିଚ୍ଛେଦ ଅନୁସାରେ ତାର ବର୍ଣ୍ଣନା ଶୈଳୀ ନିୟନ୍ତ୍ରିତ ହୋଇଥାଏ । ସମ୍ବାଦ ଶୈଳୀର ବିବରଣୀ ପ୍ରସ୍ତୁତ କରାଗଲେ ଏଥିରେ ଉତ୍ତେଜନାମୂଳକ କିମ୍ବା କୌତୁକପ୍ରଦ କାହାଣୀ ଅଥବା ବିବରଣୀ ମଝିରେ ଅନ୍ୟାନ୍ୟ ବିଷୟର ସୂଚନାର ଅବକାଶ ନଥାଏ । ବିବରଣୀ ପ୍ରସ୍ତୁତିବେଳେ

ସାମ୍ବାଦିକ ମନେରଖିବା ଉଚିତ ଯେ ସେ ସମ୍ବାଦପତ୍ର ପାଇଁ ଲେଖୁନାହାନ୍ତି, ପାଠକମାନଙ୍କ ପାଇଁ ଲେଖୁଛନ୍ତି ।

ତଥ୍ୟ ସଂଗ୍ରହ ଯେତିକି ଗୁରୁତ୍ୱପୂର୍ଣ୍ଣ ତାହାର ସଠିକ ଉପସ୍ଥାପନ ମଧ୍ୟ ସେହିପରି ଗୁରୁତ୍ୱପୂର୍ଣ୍ଣ ଏବଂ ତାହାକୁ ହୃଦୟଙ୍ଗମ କରିବା ମଧ୍ୟ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ପ୍ରଲ୍ ଭ୍ୟାଲେରି କହିଥିଲେ, "The essential thing is not to find, but to absorb what we find."

ସମ୍ବାଦପତ୍ରରେ ଲେଖା ପ୍ରକାଶନ ଆଦିକାଳରୁ ପ୍ରଚଳିତ । ରାଜନୀତିଜ୍ଞ, ଗବେଷକ, ବୈଜ୍ଞାନିକ, କଳାକାର ତଥା ବିଭିନ୍ନ ବିଷୟରେ ବିଶେଷଜ୍ଞମାନେ ଲେଖା ମାଧ୍ୟମରେ ବିଚାରଧାରା ପ୍ରକାଶ କରି ଆସୁଛନ୍ତି । ଆଧୁନିକ କାଳରେ ସମ୍ବାଦପତ୍ରଗୁଡ଼ିକର ସଂପାଦକୀୟ ପୃଷ୍ଠା ସାଙ୍ଗକୁ ପ୍ରଥମ ପୃଷ୍ଠାରେ ମଧ୍ୟ ଲେଖାଗୁଡ଼ିକ ସମ୍ବାଦ ଭାବରେ, ସମ୍ବାଦ ନିମନ୍ତେ ଉଦ୍ଦିଷ୍ଟ ସ୍ଥାନରେ ପ୍ରକାଶିତ ହେଉଥିବା ଦେଖାଯାଉଛି । ଲେଖା ମାଧ୍ୟମରେ ବହୁ ତଥ୍ୟ ପ୍ରକାଶିତ ହୋଇ ଜନମାନସକୁ ଜ୍ଞାନାଲୋକରେ ଉଦ୍ଭାସିତ କରୁଛି ।

ସାଧାରଣ ସ୍ୱାର୍ଥ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ, ଆଦର୍ଶଗତ ଓ ନୈତିକ ସମସ୍ୟାବଳୀ ସଂକ୍ରାନ୍ତ ବିସ୍ତୃତ ଭାବରେ ଆଲୋକପାତ କରିବା ତଥା ସାମାଜିକ ବିକାଶରେ ଦେଖାଯାଉଥିବା ବିଭିନ୍ନ ସମସ୍ୟା ଓ ତାହାର ନିରା-କରଣ ଦିଗରେ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିବା ଲେଖାର ମୂଳଧର୍ମ । ଲେଖା ମଧ୍ୟରେ ବହୁବିଧ ସମସ୍ୟାର ବହୁମୁଖୀ ବିଶ୍ଳେଷଣ କରାଯାଇଥାଏ ଓ ପ୍ରତ୍ୟେକ ବିଷୟର ଅବତାରଣା କରାଯାଇଥାଏ ।

ଲେଖନ ପୂର୍ବରୁ ତାହା କେଉଁ ଶ୍ରେଣୀର ପାଠକବର୍ଗଙ୍କ ନିମନ୍ତେ ଅଭିପ୍ରେତ ଓ କେଉଁ ଭାବନାର ଉଦ୍ରେକ ଲାଗି ତାହା ଅଭିପ୍ରେତ ତାହାକୁ ଆଖି ଆଗରେ ରଖି ଲେଖା ପ୍ରସ୍ତୁତ କରାଯାଏ । କୌଣସି ବିଷୟରେ ଅତି ସାମାନ୍ୟ ଜ୍ଞାନ ଥିବା ପାଠକମାନଙ୍କ ପାଇଁ ଯେଉଁ ଲେଖା ପ୍ରସ୍ତୁତ କରାଯିବ ତାହା ସେହି ବିଷୟରେ ସାଧାରଣ ପାଠକମାନଙ୍କଠାରୁ ଅଧିକ ଜ୍ଞାନଥିବା ପାଠକମାନଙ୍କ ପାଇଁ ଆକର୍ଷଣୀୟ ହେବନାହିଁ । ଏହା ମନେରଖିବାକୁ ହେବ ଯେ ସମ୍ବାଦପତ୍ରରେ ପ୍ରକାଶିତ ଲେଖା ପ୍ରତ୍ୟେକ ପାଠକ ପାଠ କରିବାର

ଅବକାଶ ଥିବାରୁ ସାଧାରଣ ଭାବରେ ଅଦ୍ଭୁତ ଲେଖନ ଶୈଳୀର ପ୍ରୟୋଗ କରାଯିବା ଆବଶ୍ୟକ । ଏହାଦ୍ୱାରା ପ୍ରତ୍ୟେକ ବର୍ଗର ପାଠକ ଆମୋଦିତ ହେବେ ।

ସମ୍ବାଦ ଓ ସାହିତ୍ୟ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ପ୍ରଜାତନ୍ତ୍ରରେ "ଗାଁ ମଜଲିସ" ସ୍ତମ୍ଭରେ ପ୍ରକାଶିତ ଉତ୍କଳର ହରେକୃଷ୍ଣ ମହତାବଙ୍କ ଲେଖାବଳୀରେ ସାହିତ୍ୟ ଓ ସାମ୍ବାଦିକତାର ଅପୂର୍ବ ସମନ୍ୱୟ ଦେଖିବାକୁ ମିଳେ । ପୁନଶ୍ଚ ଏହା କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ଓ ସମ୍ମାନିତ ହେବା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଉଦାହରଣ ସ୍ୱରୂପ ଏଠାରେ "ସବୁ ସମସ୍ୟାର ସମାଧାନ ଚାକିରି ନୁହେଁ" ଶୀର୍ଷକ ଲେଖା ଏଠାରେ ଉଦ୍ଧୃତ କରାଯାଇପାରେ ।

"ବିଶେଷତଃ ପଶ୍ଚିମବଙ୍ଗ ଓ ଓଡ଼ିଶାରେ ଚାକିରି ଯୋଗାଇବାର ପ୍ରଲୋଭନ ଯୁବକମାନଙ୍କୁ ଦେଖାଯାଏ ଏବଂ ଚାକିରି ଯୋଗାଇ ଜନପ୍ରିୟତା ଅର୍ଜନ କରିବାର ଉଦ୍ୟମ ମଧ୍ୟ ହୁଏ । ଶିଳ୍ପ ପ୍ରସାରର ଉଦ୍ଦେଶ୍ୟ ଲୋକଙ୍କୁ ଚାକିରି ଯୋଗାଇବା ବୋଲି ଘୋଷଣା କରାହୁଏ । ଫଳରେ କୌଣସି ଶିଳ୍ପ ସ୍ଥାପିତ ହେଲେ ସ୍ଥାନୀୟ ଲୋକଙ୍କୁ ଚାକିରି ଏବଂ ଦରକାର ଥାଉ ନ ଥାଉ, ଶିଳ୍ପରେ ଚାକିରି ଯୋଗାଇବା ଏମ୍. ଏଲ୍. ଏ.ମାନଙ୍କ ଏକ ପ୍ରଧାନକାର୍ଯ୍ୟ ହୋଇଯାଏ । ବିଭିନ୍ନ ସମୟରେ ଯେଉଁସବୁ ସ୍ୱର ଉଠେ ତାହାର ପ୍ରଭାବ ସମାଜ ଉପରେ କିପରି କାର୍ଯ୍ୟକରେ, ତାହା ଅନୁଧ୍ୟାନ କରାହୁଏ ନାହିଁ । ଚାକିରିରେ ସ୍ଥାନ ସଂରକ୍ଷଣ ବର୍ତ୍ତମାନ ସମାଜରେ ଯେଉଁ ବିଭ୍ରାଟ ଘଟାଇଛି ତାହା ବିହାର ଓ ଗୁଜରାଟର ପରିସ୍ଥିତିରୁ ଅନୁଭବ କରିହେବ । ଆର୍ଥିକ ପରିସ୍ଥିତିକୁ ବିଚାରକୁ ନଆନହୋଇ ଜାତି ବିଚାରକୁ ଗୁରୁତ୍ୱ ଦିଆହେଉଛି । ସ୍ୱର ଉଠିଛି ନାରୀମାନଙ୍କୁ ଚାକିରି ଦିଆହେଉ । ଏ ସଂପର୍କରେ ଏକ କୌତୁହଳପୂର୍ଣ୍ଣ ପତ୍ର ଆସିଛି । ସ୍ୱାମୀ ଚାକିରି କରୁଛି, ସ୍ତ୍ରୀ ଚାକିରି କରୁଛି । ଘରେ ଶାଶୁ ରନ୍ଧାବଢ଼ା କରି ବୋହୂପୁଅଙ୍କୁ ଖୁଆଇବ କମ୍ବା ଘରେ ଚାକର ପୂଝାରୀ ରଖିବାକୁ ହେବ । ଚାକର ପୂଝାରୀଙ୍କ ଦରମା କେତେ ହେବ ? ଶସ୍ତାରେ ଚାକର ପୂଝାରୀ ମିଳୁଛନ୍ତି ବା ଅଫିସର ପିଅନ ବା ଏନ୍. ଏମ୍. ଆର୍. ଶ୍ରମିକମାନଙ୍କୁ ଘର କାମରେ ଖଟାଇବା ହେଉଛି ନାରୀମାନଙ୍କୁ

ଚାକରି ଦେବା ଯୋଜନାର ପରିଣତି । ଅନ୍ୟ କୌଣସି ଦେଶର ନାରୀମାନଙ୍କୁ ଚାକରି ଦେବାର ସ୍ୱର ଉଠେନାହିଁ । ଭାରତରେ ମଧ୍ୟ ମହାରାଷ୍ଟ୍ର, ଗୁଜରାଟ, ରାଜସ୍ଥାନ, ମାନ୍ଦ୍ରାଜ, ଆନ୍ଧ୍ର ପ୍ରଭୃତି ପ୍ରଦେଶରେ ଘରକାମ ସବୁ ନାରୀମାନେ ଚଳାନ୍ତି । ଏପରିକି ହାଟ ବଜାର ସଉଦା ମଧ୍ୟ ଶିକ୍ଷିତା ନାରୀମାନେ ନିଃସଙ୍କୋଚରେ କରନ୍ତି । କିନ୍ତୁ ଓଡ଼ିଶାରେ ନାରୀମାନଙ୍କୁ କାମଯୋଗାଇ ଘରେ ଚାକର ନିଯୁକ୍ତ କରିବା ଏବଂ ଚାକରଙ୍କୁ ସବୁବେଳେ ଅବିଶ୍ୱାସ କରିବା ଏକ ପ୍ରଥା ହୋଇଗଲାଣି । କୌଣସି ଜାତି ବା ନାରୀମାନଙ୍କର ଉନ୍ନତି ଓ ଜାଗରଣ ଉଦ୍ଦେଶ୍ୟ ହେଲେ ବିଭିନ୍ନ କ୍ଷେତ୍ରରେ ସେମାନଙ୍କୁ ସୁବିଧା ଦେବା ଆବଶ୍ୟକ । କେବଳ ଚାକରି ଯୋଗାଇବା ନୁହେଁ । ଗାନ୍ଧୀ ଯୁଗରେ ବହୁ ସଂଖ୍ୟାରେ ନାରୀ ଦେଶକାମ କରିବାପାଇଁ ବାହାରିଥିଲେ । ସେହି ସମୟରେ ନାରୀ, ହରିଜନ ପ୍ରଭୃତି ସମାଜରେ ନେତୃତ୍ୱ ସୃଷ୍ଟି ହୋଇଥିଲା । କାରଣ ସମାଜରେ ସେମାନଙ୍କ ସମ୍ମାନ ପ୍ରତି ଦୃଷ୍ଟି ଦିଆଯାଉଥିଲା । ବର୍ତ୍ତମାନ ସ୍ଥାନ ସଂରକ୍ଷଣ ନୀତି ଥିଲେ ମଧ୍ୟ ହରିଜନ ଆଦିବାସୀଙ୍କ ମଧ୍ୟରେ ଜଗଜ୍ଜୀବନ ରାମ ବା ଝାଡ଼ଖଣ୍ଡ ନେତାଙ୍କ ଭଳି ନେତା ବାହାରି ପାରୁଛନ୍ତି କି ? ରାଜନୈତିକ, ସାଂସ୍କୃତିକ କାର୍ଯ୍ୟରେ ଯୋଗଦେବାପାଇଁ ନାରୀମାନଙ୍କୁ ଆହ୍ୱାନ କରାହୋଇ ସେମାନଙ୍କୁ ସୁବିଧା ଦେଲେ ନାରୀ ସମାଜର ଉନ୍ନତି ହୋଇପାରିବ । ଚାକରି ଯୋଗାଇବାରେ ସେପରି ହେବନାହିଁ । ସେହିପରି ହରିଜନ ଆଦିବାସୀମାନଙ୍କୁ ଦାୟିତ୍ୱ ସମ୍ପନ୍ନ କାର୍ଯ୍ୟପାଇଁ ସୁବିଧା ଦେଲେ ସେମାନଙ୍କ ମଧ୍ୟରେ ନେତୃତ୍ୱ ସୃଷ୍ଟି ହେବ । ଅନ୍ୟଥା କେବଳ ସ୍ଥାନର ସ୍ୱଳ୍ପତା ଉପରେ ନିର୍ଭରକରି ବର୍ଣ୍ଣଭେଦକୁ ଦୂରକରିବା ପରିବର୍ତ୍ତେ ଏହାକୁ ସ୍ଥାୟୀ କରି ଦିଆଯାଉଛି । କାମ ଯୋଗାଇବାକୁ ହେଲେ କାର୍ଯ୍ୟର ସଫଳତା ପ୍ରତି ଦୃଷ୍ଟି ନଦେଇ କେବଳ କାମ ଯୋଗାଇବା ଉଦ୍ଦେଶ୍ୟ ହେଲେ, ଶିଳ୍ପ ବା ଯେ କୌଣସି ଅନୁଷ୍ଠାନର ଉନ୍ନତି ସାଧିତ ହେବନାହିଁ ।

ଅଜ୍ଞତାର ଚରମ ସୀମା ହେଉଛି—ବାଲିଆପାଳ ସମସ୍ୟା ସମ୍ବନ୍ଧରେ ବିବୃତି ଦିଆହେଉଛି ଓଡ଼ିଶାର ଦ୍ୱିତୀୟ ଇସ୍ପାତ କାରଖାନା କରି ସେଠାର ବାସଚ୍ୟୁତ ଲୋକମାନଙ୍କୁ କାମ ଯୋଗାଇ ଦିଆଯାଉ । ଏପରି ବିବୃତି ଯେ ହାସ୍ୟାସ୍ପଦ ଏବଂ ବାସଚ୍ୟୁତମାନଙ୍କ ପ୍ରତି ପରିହାସ ଏଥିରେ ସନ୍ଦେହ ନାହିଁ । ପୁଣି କୁହାଯାଉଛି ବାସଚ୍ୟୁତ ଲୋକଙ୍କୁ ସରକାରୀକାମ ଦିଆଯାଉ । ଏସବୁ

ଏପରି ଉଦ୍ଭଟ କଥା, ଯଦ୍ୱାରା କୌଣସି ସମସ୍ୟାର ସମାଧାନ ତ ହେଉନାହିଁ, ବରଂ ଗ୍ଳକଣ୍ଠ ଯୋଗାଇବା କୁହୁଡ଼ିରେ ପହଁରି ହାତଗୋଡ଼ ଜଖମ ହୋଇ-ଯିବ । ଗ୍ଳକଣ୍ଠ ପରିବର୍ତ୍ତେ ସାଧାରଣ ଆର୍ଥିକ ସ୍ଥିତିରେ ଉନ୍ନତି ସାଧିତ ହେଲେ ଲୋକେ ନାନା ଉପାୟରେ ଜୀବିକା ଅର୍ଜ୍ଜନ କରିପାରିବେ ।”

(ତା ୧୭-୫-୮୭ରିଖ, ଶନିବାର “ପ୍ରଜାତନ୍ତ୍ର”) ଷ୍ଟେଟ ଏହି ଲେଖାଟିରେ କିଭଳି ପ୍ରଭାବଶାଳୀ ଶୈଳୀରେ ବହୁ ସମସ୍ୟାର ଅବତାରଣା ଓ ତାହାର ନିଦାନ ପରିବେଷଣ କରାଯାଇଛି, ତାହା ପ୍ରଣିଧାନଯୋଗ୍ୟ ।

ଉତ୍କଳମଣି ଗୋପବନ୍ଧୁ ଦାସ ଯେଉଁ ଶୈଳୀ ଓ ଲୌକିକ ଭାଷାର ପ୍ରୟୋଗ କରୁଥିଲେ ତାହା ସର୍ବଜନବୋଧ ଓ ଆକର୍ଷଣୀୟ ହେଉଥିଲା । ପରବର୍ତ୍ତୀକାଳରେ ବହୁ ଲେଖକ ତାଙ୍କର ଲେଖନ କଳାର ଅନୁକରଣ କରିଛନ୍ତି । ତାଙ୍କ ଲେଖାର ଏକ ନମୁନା ଏଠାରେ ପ୍ରସ୍ତୁତ କରାଗଲା ।

“× × × ଗ୍ରାମର ଦଳଗତ ଜୀବନ କ୍ରମେ କ୍ଷୀଣ ହୋଇ ବ୍ୟକ୍ତିଗତ ଜୀବନ ଉତ୍କଟ ଆକାରରେ ଦେଖାଯାଉଛି । ଏହି କାରଣରୁ ଗ୍ରାମବାସୀଙ୍କ ମଧ୍ୟରେ ଏତେ କଳହ, ବିବାଦ, ଏତେ ମାମଲା ମକଦ୍ଦମା । ଗାଁରେ ଜଣଙ୍କର ଯେବେ ପୌଷମାସ, ଆଉ ଜଣଙ୍କର ସର୍ବନାଶ । ଜଣଙ୍କର କୋଠା ଉପରେ ଦୋତାଲା ଉଠିଲାବେଳକୁ ଆଉଜଣଙ୍କର କୁଡ଼ିଆ ଭାଙ୍ଗି-ଯାଉଛି । ଗ୍ରାମରେ କୋଠ ବ୍ୟବସ୍ଥା ଥିବା ଏବଂ ପ୍ରତ୍ୟେକ ଗ୍ରାମବାସୀ ନିଜ ନିଜର ନିର୍ଦ୍ଦିଷ୍ଟ କାମ କରୁଥିବାବେଳେ ଏ ବିଷମ ଦଶା ନଥିଲା । ବାସ୍ତବରେ ଏକା ଆମ ଦେଶରେ ନୁହେଁ, ପୃଥିବୀରେ ସର୍ବତ୍ର ଆଜି ମନୁଷ୍ୟ ମନୁଷ୍ୟ ମଧ୍ୟରେ ଅବସ୍ଥାର ଯେ ପ୍ରଭେଦ ଘଟିଛି, ସମଦର୍ଶୀ ଲୋକର ଦୃଷ୍ଟିରେ ତାହା ଅସହ୍ୟ । ବିଧାତାଙ୍କ ରାଜ୍ୟରେ ତାହା ଅଧିକ ଦିନ ରହିପାରିବ ନାହିଁ । ମୁଣ୍ଡି ଝାଳ ତୁଣ୍ଡେ ମାରି ଦଳେ ସବୁବେଳେ ଖଟୁଛନ୍ତି, ଜୀବନକୁ ବିପଦଗ୍ରସ୍ତ କରୁଛନ୍ତି । କାରଖାନାରେ କାମ କରୁ କରୁ କିଏ କାଟ ଖାଇଯାଉଛି, ଖଣିରେ କିଏ ପୋତିହୋଇ ମରୁଛି, ସନ୍ତସନ୍ତିଆ ଘରେ କିଏ ମେଲେରିଆରେ ସଡ଼ୁଛି, ତଥାପି ଏହିମାନଙ୍କ ପରିଶ୍ରମରେ ଜଗତର ସମସ୍ତ ସମ୍ପଦର ଉତ୍ପତ୍ତି । ମାତ୍ର ଏ ସମ୍ପଦ ଭୋଗୁଛନ୍ତି କିଏ ? ଭୋଗିବା ଲୋକଙ୍କ ଦେହରେ ଧୂଳି

ପଡ଼ୁନାହିଁ, ତାଙ୍କ ପ୍ରାଦ ତଳେ ଲଗୁନାହିଁ, ଛତିଶ ଦ୍ରବ୍ୟ ବ୍ୟଞ୍ଜନ ତାଙ୍କୁ ରୁଚୁନାହିଁ । ସେ କୋଟିପତି, ସେ ଲକ୍ଷପତି, ସେ ରଜା, ସେ ଜମିଦାର । ମାତ୍ର ଯେ ବସ୍ତୁର ଉତ୍ପନ୍ନ କରୁଛି ସେ ମୂଲିଆ, ସେ ପ୍ରଜା । ଭିନ୍ନ ଭିନ୍ନ ଶ୍ରେଣୀର ଲୋକଙ୍କ ମଧ୍ୟରେ ଅବସ୍ଥାର ଏହି ବିଷମ ବିଭେଦ ଘୁଞ୍ଚାଇ ସମସ୍ତଙ୍କୁ ସମାନ ସୁଖଶାନ୍ତି ଅଧିକାର ଦେବା କମ୍ୟୁନିଷ୍ଟ (ସାମ୍ୟବାଦୀ) ବା ବୋଠ-ବାଗମାନଙ୍କର ଯେବେ ମତ ହୁଏ ତାହା ଗରିବଙ୍କୁ ନିଶ୍ଚୟ ଭଲ ଲାଗିବ । ପ୍ରଜା ଓ ମଜୁରିଆମାନେ ଏକଥା ଶୁଣି ମୁଣ୍ଡିଆ ମାରିବେ । ମାତ୍ର ଯେଉଁ-ମାନେ ଦେଶରେ ସମ୍ପଦ ଧରି ବସିଛନ୍ତି, ସବୁ ଅଧିକାରକୁ ନିଜ ହାତରେ ରଖିଛନ୍ତି, ତଥାପି ତୃଷ୍ଣା ଯେଉଁମାନଙ୍କର ମେଣ୍ଟୁନାହିଁ, ସନ୍ନିପାତ ରୋଗୀପରି ଅଧିକ ପାଇବାକୁ ତୃଷ୍ଣା ଦିନକୁ ଦିନ ବଢ଼ୁଛି, ସେମାନେ ଏ ବୋଠବାଗଙ୍କ ମତରେ ଆପଣାର ପ୍ରମାଦ ଯେ ଗଣିବେ—ବିଚିତ୍ର କଣ ? × × × ।"

(୧୯୨୭ ଜାନୁୟାରୀ ୨ ତାରିଖ ସଂଖ୍ୟା ସମାଜ ସମ୍ପାଦକୀୟ)

ଉତ୍କଳମଣିଙ୍କର ଏହି ଲେଖା ପଢ଼ି, ସେ କମ୍ୟୁନିଷ୍ଟ ଥିଲେ ବୋଲି ବିଚାର କରି ବସିବ । ଏକଦା ମାସିକ ପତ୍ରିକା "ଆଶା" ତାଙ୍କୁ ଓଡ଼ିଶାର ପ୍ରଥମ କମ୍ୟୁନିଷ୍ଟ ଭାବରେ ଅଭିହିତ କରିଥିଲା । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ମନ୍ତବ୍ୟ ପୂର୍ବରୁ ଉଲ୍ଲେଖ କରାଯାଇଛି, "ଗୋପବନ୍ଧୁ ରାଜନୀତିକ କମ୍ବା ଅନ୍ୟ କୌଣସି ଦଳକୁ ଜାଣିନଥିଲେ, ଜାଣିଥିଲେ କେବଳ ଦେଶ ।"

ଲେଖା ପ୍ରସ୍ତୁତି ନିମନ୍ତେ ବହୁ ତଥ୍ୟ ଆବଶ୍ୟକ । ଉପକ୍ରମଣିକା, ମୁଖ୍ୟ ବିଷୟର ଅବତାରଣା, ଏ ସମ୍ବନ୍ଧୀୟ ବିଭିନ୍ନ ସମ୍ଭାବିତ ପ୍ରଶ୍ନ ଓ ସେଗୁଡ଼ିକର ଉତ୍ତର, ବିଷୟ ସପକ୍ଷରେ ଓ ବିପକ୍ଷରେ ଯୁକ୍ତିସମୂହ ଏବଂ ଉପସଂହାର କ୍ରମରେ ଲେଖା ପ୍ରସ୍ତୁତ କରାଯାଏ । ଗଳ୍ପ ଲେଖନ କଳାଠାରୁ ଏହା ସମ୍ପୂର୍ଣ୍ଣ ଭାବରେ ପୃଥକ ।

ଲେଖାରେ ପ୍ରକାଶିତ ବିଷୟ ସମ୍ପର୍କରେ ବିଭିନ୍ନ ଦିଗରୁ ଯୁକ୍ତି-ସମୂହର ପ୍ରାଞ୍ଜଳ ବର୍ଣ୍ଣନା ରହିବା ଆବଶ୍ୟକ । ଏହା ଦ୍ୱାରା ପାଠକମାନେ ମଧ୍ୟ ନିଷ୍କ୍ରିୟ ନହୋଇ ଚିନ୍ତା କରିବାର ଅବକାଶ ପାଇବେ । ଉକ୍ତ ଯୁକ୍ତି-ସମୂହର ଉପସଂହାର ଲେଖାର ମୂଳ ବିଷୟବସ୍ତୁକୁ ବଳିଷ୍ଠ କରିଥାଏ ।

ପ୍ରକାଶିତ ପୁସ୍ତକାବଳୀ, ପ୍ରଣୀତ ଆଇନ, ଇତିହାସ, ଘଟଣାବଳୀର କ୍ରମବିକାଶ, ସାହିତ୍ୟ, କଳା, ସଂସ୍କୃତି, ପ୍ରାଚୀନ କୀର୍ତ୍ତି, ମହାପୁରୁଷଙ୍କ ଜୀବନୀ ଏବଂ ନିଜସ୍ୱ ଅନୁଭୂତି ଓ ବିଚାରଧାରା ତଥା ସାଂପ୍ରତିକ ଘଟଣାବଳୀରୁ ଲେଖାର ବିଷୟବସ୍ତୁ ଗ୍ରହଣ କରାଯିବା ସଙ୍ଗେ ସଙ୍ଗେ ନୂତନ ତଥ୍ୟର ଅନୁସନ୍ଧାନ ଓ ଅବତାରଣା କରାଯିବା ଆବଶ୍ୟକ । ପ୍ରାଚୀନ ଆଧୁନିକ ଚିନ୍ତାଧାରା ମଧ୍ୟରେ ଏକ ତୁଳନାତ୍ମକ ବିବରଣୀ ମଧ୍ୟ ଲେଖାରେ ସ୍ଥାନିତ ହେବାର ଯୋଗ୍ୟ । ଏହାଦ୍ୱାରା ସାଂପ୍ରତିକ ସ୍ଥିତି ନିରୂପଣ କରାଯାଇପାରେ ଓ ନୂତନ ଚେତନାର ଉଦ୍ଭବ ହୁଏ ।

ସମସ୍ତ ବିବଦମାନ ପ୍ରଶ୍ନର ସ୍ପଷ୍ଟ ଓ ସନ୍ତୋଷଜନକ ଉତ୍ତର ଲେଖା ମଧ୍ୟରେ ପ୍ରକାଶିତ ହେବା ଉଚିତ । ଯୁକ୍ତି ବଳିଷ୍ଠ ନ ହେଲେ ବିଷୟବସ୍ତୁ ସର୍ବଜନଗ୍ରାହ୍ୟ ହୋଇପାରିବ ନାହିଁ ।

ଲେଖା କେବଳ ସାମ୍ବାଦିକମାନେ ଲେଖନ୍ତି ନାହିଁ । ଅଣ-ସାମ୍ବାଦିକ ବୁଦ୍ଧିଜୀବୀ ତଥା ନୂତନ ଚିନ୍ତାଶୀଳ ଯୁବକମାନେ ମଧ୍ୟ ଲେଖା ପ୍ରସ୍ତୁତ କରି ପ୍ରକାଶନାର୍ଥେ ଏବଂ ସମ୍ବାଦପତ୍ର କାର୍ଯ୍ୟାଳୟକୁ ପଠାଇ ଥାନ୍ତି । କିନ୍ତୁ ଜଣେ ପୋଖତ ସାମ୍ବାଦିକର ଲେଖାରେ ଉପକ୍ରମଣିକାଠାରୁ ହିଁ ସୁନିୟୋଜିତ ଶବ୍ଦ ସଂଯୋଜନା ପରିଲକ୍ଷିତ ହୋଇଥାଏ ଏବଂ ଲେଖାର ପ୍ରାରମ୍ଭ ଓ ଧାରା ସୁନିୟନ୍ତ୍ରିତ ଏବଂ ଶେଷରେ ଉପସଂହାରଧର୍ମୀ ହୋଇଥାଏ ।

ସାକ୍ଷାତକାର ସାମ୍ବାଦିକତାର ଏକ ମୁଖ୍ୟ ବିଭବ । ସାକ୍ଷାତକାର ମାଧ୍ୟମରେ ବହୁ ଘଟଣାବଳୀ ଓ ବିଷୟବସ୍ତୁ ପାଠକମାନଙ୍କ ସମ୍ମୁଖରେ ପ୍ରଭାବଶାଳୀ ଢଙ୍ଗରେ ଉପସ୍ଥାପନ କରାଯାଇପାରେ । ସାକ୍ଷାତକାର ମାଧ୍ୟମରେ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଜ୍ଞାନୀ ଓ ଗୁଣୀଜନଙ୍କଠାରୁ ପାଠକବର୍ଗ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜ୍ଜନ କରିପାରିବେ ।

ଜଣେ ସାମ୍ବାଦିକ, ବିଶେଷକରି ସଫଳ ସାମ୍ବାଦିକ ପ୍ରତ୍ୟେକ ବିଷୟରେ ସାମାନ୍ୟ ଜ୍ଞାନର ଅଧିକାରୀ ହୋଇଥାନ୍ତି । କିନ୍ତୁ ପ୍ରତ୍ୟେକ ବିଷୟରେ ଜଣେ ସାମ୍ବାଦିକ ସର୍ବଜାନ୍ତା ହୋଇପାରିବ ନାହିଁ । ତେଣୁ

ବିଶେଷ ଦକ୍ଷ ପ୍ରତିଭାସମ୍ପନ୍ନଙ୍କର ଉପସ୍ଥାପନ ପାଠକବର୍ଗଙ୍କୁ ସମ୍ପୃକ୍ତ ବିଷୟରେ ବିଶେଷ ଜ୍ଞାନ ଯୋଗାଇଥାଏ ।

ସାକ୍ଷାତକାର ଗ୍ରହଣର ରୀତି ଓ ଧାରା ସମ୍ପର୍କରେ ଅବଗତ ନଥିଲେ ସମ୍ପୃକ୍ତ ସାମ୍ବାଦିକ ଅସୁବିଧାଜନକ ପରିସ୍ଥିତିର ସମ୍ମୁଖୀନ ହେବା ସ୍ୱାଭାବିକ । ସମ୍ବାଦ ସଂଗ୍ରହ ସମୟରେ ସମ୍ପୃକ୍ତ ବ୍ୟକ୍ତିବିଶେଷଙ୍କୁ ଯେଉଁ ବିଷୟରେ ଯେଉଁ ଧରଣର ପ୍ରଶ୍ନ କରାଯାଏ, ସାକ୍ଷାତକାର ସମୟରେ ସେହିଧାରା ଅନୁସୃତ ହୁଏ ନାହିଁ । ସମ୍ପୃକ୍ତ ବ୍ୟକ୍ତିଙ୍କ ସହ ପ୍ରଶ୍ନୋତ୍ତର ମାଧ୍ୟମରେ ସମସ୍ତ ମୁଖ୍ୟ ଜ୍ଞାତବ୍ୟ ତଥ୍ୟ ଆହରଣ କରାଯାଇଥାଏ । ସାକ୍ଷାତକାର ବିବରଣୀ ମୁଖ୍ୟତଃ ସ୍ପଷ୍ଟୀ-କରଣଧର୍ମୀ । ପ୍ରକୃଷ୍ଟ ସାକ୍ଷାତ ବିବରଣୀ ପ୍ରଶ୍ନୋତ୍ତର କ୍ରମରେ ଅଥବା ଲେଖା ପ୍ରସ୍ତୁତି ଶୈଳୀରେ ସାମ୍ବାଦିକର ସୁବିଧାନୁସାରେ ପ୍ରକାଶ କରାଯାଇ-ପାରେ । ପ୍ରଶ୍ନକର୍ତ୍ତା ସାମ୍ବାଦିକର ପ୍ରଶ୍ନ ଏଭଳି ହେବା ଉଚିତ ଯେପରିକି ସମ୍ପୃକ୍ତ ବ୍ୟକ୍ତି ପ୍ରଶ୍ନକର୍ତ୍ତାଙ୍କୁ ପାଲଟା ପ୍ରଶ୍ନ ପଚାରି ବସିବା ସହଜ ହେବ ନାହିଁ ।

ଯେକୌଣସି ବିଷୟରେ ସାକ୍ଷାତକାର ନିମନ୍ତେ ସ୍ଥିରୀକୃତ ଉତ୍ତରଦାତା ବ୍ୟକ୍ତି ସମ୍ପୃକ୍ତ ବିଷୟରେ ନିଶ୍ଚିତ ଭାବରେ ବିଶେଷଜ୍ଞ ହୋଇଥିବା ଉଚିତ । ନଚେତ ପ୍ରଶ୍ନୋତ୍ତରର କୌଣସି ଅର୍ଥ ରହିବ ନାହିଁ । ପ୍ରଶ୍ନସମୂହ ଉତ୍ତରଦାତା ଓ ପାଠକ, ଉଭୟଙ୍କ ନିମନ୍ତେ ଆକର୍ଷଣୀୟ ଓ ଉତ୍ସାହବର୍ଦ୍ଧକ ତଥା ଜ୍ଞାନବର୍ଦ୍ଧକ ହେବା ଆବଶ୍ୟକ ।

ସାକ୍ଷାତକାର ପୂର୍ବରୁ ସାମ୍ବାଦିକ ପ୍ରଶ୍ନୋତ୍ତର କ୍ରମ ସ୍ଥିର କରିନେବା ଉଚିତ । ପ୍ରଶ୍ନ କରିବା ସମୟରେ ସମ୍ଭାବିତ ଉତ୍ତର ସମ୍ବନ୍ଧରେ ସାମାନ୍ୟ ଜ୍ଞାନ ରହିଲେ ପରବର୍ତ୍ତୀ ପ୍ରଶ୍ନ ଅଧିକ ପ୍ରଭାବଶାଳୀ ହୋଇପାରିବ । କାରଣ ପ୍ରଶ୍ନୋତ୍ତର ସମୟରେ ମୂଳ ପ୍ରଶ୍ନ କ୍ରମରେ ଆବଶ୍ୟକସ୍ଥଳେ ପରିବର୍ତ୍ତନ ଆବଶ୍ୟକ ହୋଇପାରେ । ତେବେ ପୂର୍ବରୁ ପ୍ରଶ୍ନୋତ୍ତର କ୍ରମ ସମ୍ବନ୍ଧୀୟ ଚିନ୍ତା କରିଥିଲେ ପଥହରା ହେବାକୁ ପଡ଼ିବ ନାହିଁ ଓ ପ୍ରଶ୍ନକର୍ତ୍ତା ପୁଣି ମୂଳପ୍ରଶ୍ନକୁ ଫେରି ଆସି ପାରିବେ ।

ସାକ୍ଷାତକାର ଆରମ୍ଭ କରିବା ପୂର୍ବରୁ ପ୍ରଶ୍ନକର୍ତ୍ତା ସାମ୍ବାଦିକ ଉତ୍ତର-ଦାତାଙ୍କ କାର୍ଯ୍ୟକଳାପ, ତାଙ୍କର କାର୍ଯ୍ୟସ୍ଥଳ, ସଫଳତା ଓ ଅଭିଜ୍ଞତା

ସମ୍ପର୍କରେ ଅନ୍ୟାନ୍ୟ ସୂତ୍ରରୁ ଜାଣି ରଖିବା ଉଚିତ । କାରଣ କୌଣସି ବ୍ୟକ୍ତିଙ୍କ ନିକଟକୁ ସାକ୍ଷାତକାର ନିମନ୍ତେ ଯାଇ ଆପଣଙ୍କର ପୂରାନାମ କ'ଣ ? ଆପଣ କ'ଣ କରନ୍ତି ? ଇତ୍ୟାଦି ପ୍ରଶ୍ନ କରିବା ନିର୍ବୋଧ ପଣିଆର ପରିଚୟ ବୋଲି କୁହାଯାଇପାରେ । ଏଠାରେ ମନେ ରଖିବାର କଥା, "ଜଣେ ନିର୍ବୋଧ ଲୋକ ଏକଘଣ୍ଟା ମଧ୍ୟରେ ଯେତିକ ପ୍ରଶ୍ନ ପଚାରିପାରେ, ଜଣେ ବିଜ୍ଞବ୍ୟକ୍ତି ସେଗୁଡ଼ିକର ଉତ୍ତର ଜୀବନକାଳ ମଧ୍ୟରେ ଦେଇପାରିବେ ନାହିଁ ।"

ବିଭିନ୍ନ ସମ୍ବାଦରେ ପଡ଼ିଥିବା ତଥ୍ୟକୁ ଦୋହରାଇବା ଲାଗି ସାକ୍ଷାତକମରେ କେତେକ ପ୍ରଶ୍ନ କରାଯାଇପାରେ । ଯଥା—ରାଜ୍ୟ ବିଦ୍ୟୁତ ବୋର୍ଡ଼ର ଅଧ୍ୟକ୍ଷଙ୍କ ସହ ପ୍ରଶ୍ନୋତ୍ତର ସମୟରେ ରାଜ୍ୟର କେତୋଟି ବାସ-ଗୃହରେ ବିଦ୍ୟୁତ ଶକ୍ତି ବ୍ୟବହୃତ ହେଉଛି, ଗତବର୍ଷ କେତେଜଣ ଗେରି ବ୍ୟବହାରକାରୀଙ୍କୁ ଦଣ୍ଡିତ କରାଯାଇଛି, ଚଳିତବର୍ଷ କେତୋଟି ନୂତନ ଗ୍ରାମକୁ ବିଦ୍ୟୁତଶକ୍ତି ଯୋଗାଇ ଦିଆଯିବାର ଲକ୍ଷ୍ୟ ରହିଛି ଇତ୍ୟାଦି ପ୍ରଶ୍ନ କରାଯାଇପାରେ । ପୁନଶ୍ଚ ରାଜ୍ୟରେ କାହିଁକି ଘନଘନ ବିଦ୍ୟୁତ ବିଭ୍ରାଟ ହେଉଛି, ଏହାର ମାତ୍ରା କମ କରିବା ଲାଗି ବିଦ୍ୟୁତବୋର୍ଡ଼ କି ପ୍ରକାର ଉଦ୍ୟମ କରୁଛି, କର୍ମଚାରୀମାନଙ୍କର କାର୍ଯ୍ୟ ଦକ୍ଷତା ବୃଦ୍ଧିଲାଗି କି ପ୍ରକାର ଉତ୍ସାହମୂଳକ ପଦକ୍ଷେପ ଗ୍ରହଣ କରାଯାଉଛି ଇତ୍ୟାଦି ସମସ୍ୟାଜନିତ ପ୍ରଶ୍ନ ଉପସ୍ଥାପନ କରାଯାଇପାରେ । ଆହୁରି ମଧ୍ୟ ଆସନ୍ତା କେତେବର୍ଷ ମଧ୍ୟରେ ରାଜ୍ୟରୁ ବିଦ୍ୟୁତ ସଙ୍କଟ ଦୂରୀଭୂତ ହେବ ବୋଲି ଆପଣ ଭାବୁଛନ୍ତି, କେଉଁ କେଉଁ କାରଣରୁ ଏହି ଲକ୍ଷ୍ୟ ପୂରଣ ହୋଇପାରୁ ନାହିଁ ଓ ଏହାର ନିରାକରଣ ଲାଗି କେଉଁ ପଦକ୍ଷେପ ଗ୍ରହଣ କରାଯିବା ଉଚିତ ଇତ୍ୟାଦି ପ୍ରଶ୍ନ କରି ଉତ୍ତରଦାତାଙ୍କ ନିଜସ୍ୱ ମତାମତ ସଂଗ୍ରହ କରାଯାଇପାରେ । କୌଣସି ବିଷୟରେ ଉତ୍ତରଦାତା ସ୍ପଷ୍ଟ ଉତ୍ତର ଦେବାରେ ଅସମର୍ଥ ହେଲେ କେତେକ ଉତ୍ସାହଜନକ ପ୍ରଶ୍ନ, ଯଥା—ଗତ କେଇବର୍ଷ ମଧ୍ୟରେ ବିଦ୍ୟୁତ୍ ପରିସ୍ଥିତିରେ ଯେଉଁ ଉନ୍ନତି ଘଟିଛି ସେଥିଲାଗି ଆପଣ ବହୁ ପରିଶ୍ରମ କରିଛନ୍ତି । ଯଦି କେନ୍ଦ୍ର ସରକାର ଯଥୋଚିତ ସାହାଯ୍ୟ କରନ୍ତେ ତେବେ ରାଜ୍ୟ ସରକାର ପରିସ୍ଥିତି ସମ୍ଭାଳିବାରେ ସମର୍ଥ ହୁଅନ୍ତେ ଓ ଆପଣଙ୍କର ଉଦ୍ୟମ ସଫଳ ହୁଅନ୍ତା । ତେବେ ଏପରି କାହିଁକି ହେଉନାହିଁ ଇତ୍ୟାଦି ପ୍ରଶ୍ନ କରାଯାଇପାରେ ।

ସାକ୍ଷାତକାର ବିବରଣୀ ପ୍ରକାଶନବେଳେ କୌଣସି ଅତିରିକ୍ତ ବିଷୟ ଯୋଡ଼ାଯିବା କିମ୍ବା ଶବ୍ଦ ସଂଯୋଜନାରେ ବଡ଼ ଧରଣର ପରିବର୍ତ୍ତନ କରାଯିବା ଯୁକ୍ତି ସଙ୍ଗତ ନୁହେଁ । କୌଣସି ବିଷୟର ପୁନରାବୃତ୍ତି ହୋଇଥିଲେ ସଂପୃକ୍ତ ଅଂଶକୁ କାଟି ଦିଆଯାଇପାରେ । ପ୍ରଶ୍ନୋତ୍ତରଢାଞ୍ଚାରେ ସାକ୍ଷାତକାର ବିବରଣୀ ଅଥବା ସାକ୍ଷାତକାର ବିବରଣୀର ସାରାଂଶ ପ୍ରକାଶନବେଳେ ସାକ୍ଷାତକାରର ମୂଳଧାରା କିମ୍ବା ବିଷୟବସ୍ତୁର ବିକୃତ ଉପସ୍ଥାପନା ଶୋଭନୀୟ ନୁହେଁ । ଏହା ପାଠକ ମହଲରେ ମଧ୍ୟ ଆଦୃତ ହୁଏ ନାହିଁ ।

ସମ୍ବାଦପତ୍ରଗୁଡ଼ିକରେ ଜୀବନୀ ତଥା ବ୍ୟକ୍ତିତ୍ୱ ଉପରେ ଆଲୋକପାତ କରାଯାଇଥାଏ । ଏହାଦ୍ୱାରା ବ୍ୟକ୍ତି, ଜୀବନ, କାର୍ଯ୍ୟଦକ୍ଷତା, ଅଭିଜ୍ଞତା ସମ୍ବନ୍ଧରେ ବର୍ଣ୍ଣନା କରାଯାଇ ନିର୍ଦ୍ଦିଷ୍ଟ ବ୍ୟକ୍ତି ଅଥବା ବ୍ୟକ୍ତିତ୍ୱ କିମ୍ବା ଉଭୟ ଉପରେ ଆଲୋକପାତ କରାଯାଏ । ଯେଉଁମାନେ କୌଣସି ନୂତନ ପଥ ଦେଖାଇଛନ୍ତି କିମ୍ବା କୌଣସି ସମସ୍ୟାର ସମାଧାନ କରିଛନ୍ତି, ଅଥବା କୌଣସି ନୂତନ ସମସ୍ୟା ସୃଷ୍ଟି କରିଛନ୍ତି ସେମାନଙ୍କ ସମ୍ପର୍କରେ ଲେଖା-ଯାଇଥାଏ । ତେଣୁ ସମ୍ବାଦପତ୍ରରେ ମହାତ୍ମାଗାନ୍ଧୀଙ୍କ ସମ୍ପର୍କରେ ଏବଂ ଗୁର୍ଲିସ ଶୋଭରାଜଙ୍କ ସମ୍ପର୍କରେ ଲେଖା ପାଖାପାଖି ସ୍ଥାନରେ ପ୍ରକାଶିତ ହୋଇଥାଏ ।

ବିଭିନ୍ନ ବ୍ୟକ୍ତିଙ୍କ ଶ୍ରାଦ୍ଧବାସରେ ତଥା ଜୟନ୍ତୀବାସରେ ସେମାନଙ୍କ ସମ୍ପର୍କରେ ଲେଖା ପ୍ରକାଶିତ ହୁଏ । ଏଗୁଡ଼ିକ ତଥ୍ୟ ଉପରେ ପର୍ଯ୍ୟବେଶିତ ହେବା ଆବଶ୍ୟକ । "ସେ ଭଲ ଲୋକଥିଲେ, ଖୁବ୍ ଭଲ ଲୋକ ଥିଲେ" ବୋଲି ଲେଖି ଗଲେ କୌଣସି ଉଦ୍ଦେଶ୍ୟ ସାଧିତ ହେବନାହିଁ ।

ଏଠାରେ ଜଣେ ସ୍ୱାଧୀନତା ସଂଗ୍ରାମୀଙ୍କ ଜୀବନୀ ଉଦାହରଣ ଭାବରେ ଉଲ୍ଲେଖ କରାଯାଉଛି ।

## ଆନ୍ଦୋଳନ ହିଁ ମୋର ଜୀବନ

ସ୍ୱର୍ଗୀୟ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଜଣେ ଅନନ୍ୟସାଧାରଣ ସ୍ୱାଧୀନତା ସଂଗ୍ରାମୀ ତଥା ନିର୍ଭୀକ ଓ ନିଃସ୍ୱାର୍ଥପର ସମାଜସେବୀ ଥିଲେ । ତାଙ୍କ ନେତୃତ୍ୱରେ ସମ୍ବଲପୁରରେ ସଂଗଠିତ ଅସହଯୋଗ ଆନ୍ଦୋଳନର ସଫଳତା ଅନସ୍ୱୀକାର୍ଯ୍ୟ ।

ତାଙ୍କ ପିତାଙ୍କ ନାମ କୃପାସିନ୍ଧୁ ମିଶ୍ର ଓ ମାତାଙ୍କ ନାମ ରେବତୀ ଦେବୀ । ଏପ୍ରିଲ୍ ୧୧, ୧୯୦୪ରେ ତାଙ୍କର ଜନ୍ମ । ଶିକ୍ଷାଲାଭ ଶେଷ କରିବା ପରେ ମାନଧାତା ନନ୍ଦଙ୍କ କନ୍ୟା କମଳା ଦେବୀଙ୍କ ସହ ତାଙ୍କର ବିବାହ ହୋଇଥିଲା ।

୧୯୨୧ରେ ଅସହଯୋଗ ଆନ୍ଦୋଳନ ଅନ୍ୟତ୍ର ବ୍ୟାପିବା ପୂର୍ବରୁ ଲକ୍ଷ୍ମୀନାରାୟଣଙ୍କ ନେତୃତ୍ୱରେ ସମ୍ବଲପୁର ଜିଲ୍ଲା ସ୍କୁଲର ଛାତ୍ରମାନେ ଜାନୁୟାରୀ ୩ ତାରିଖରେ ଶ୍ରେଣୀ ବର୍ଜନ କରିଥିଲେ । ସମ୍ବଲପୁରରେ ପୂର୍ଣ୍ଣ ହରତାଳ ପାଳିତ ହେଲା । ଏହା ଫଳରେ ଉକ୍ତ ଆନ୍ଦୋଳନ ଜିଲ୍ଲାତମାମ ନିଆଁ ପରି ବ୍ୟାପିଗଲା । ଏହି ଆନ୍ଦୋଳନକୁ ବିଫଳ କରିବା ଲାଗି ସମ୍ବଲପୁରର ଡେପୁଟି କମିଶନର ବହୁ ଦମନମୂଳକ ପଦକ୍ଷେପ ଗ୍ରହଣ କରିଥିଲେ ଓ ଲକ୍ଷ୍ମୀନାରାୟଣଙ୍କ ଗତିବିଧି ଉପରେ ନିୟନ୍ତ୍ରଣ ଜାରି କରାଯାଇଥିଲା । ସେହି ବର୍ଷ ଡିସେମ୍ବର ମାସରେ ବ୍ରିଟିଶ ଯୁବରାଜଙ୍କ ଭାରତ ଆଗମନ ଅବସରରେ ଦେଶବ୍ୟାପୀ ପାଳିତ ହରତାଳ ସମ୍ବଲପୁରରେ ପୂର୍ଣ୍ଣ ସଫଳ ହୋଇଥିଲା ।

୧୯୨୨ ଏପ୍ରିଲ୍ ୬ ତାରିଖରୁ ୧୩ ତାରିଖ ପର୍ଯ୍ୟନ୍ତ ନିର୍ଭୀକ ଲକ୍ଷ୍ମୀନାରାୟଣ ଜାତୀୟ ସପ୍ତାହ ପାଳନର ଆୟୋଜନ କରିଥିଲେ । ୧୩ ତାରିଖ ଦିନ ପୁଣି ପୂର୍ଣ୍ଣ ହରତାଳ ପାଳିତ ହୋଇଥିଲା । ଲକ୍ଷ୍ମୀ-ନାରାୟଣଙ୍କୁ ବରଗଡ଼ରେ ଗିରଫ କରାଯାଇ ୫୦ ଟଙ୍କା ଜୋରିମାନା କରାଯାଇଥିଲା । ସେ ତାହା ପ୍ରତ୍ୟାଖ୍ୟାନ କରିବାରୁ ଏକମାସ କାରାଦଣ୍ଡରେ ଦଣ୍ଡିତ ହୋଇଥିଲେ । ତେବେ ନିର୍ଦ୍ଧାରିତ ଅବଧିପୂର୍ବରୁ ତାଙ୍କୁ ଖଲାସ କରି ଦିଆଯାଇଥିଲା ।

ଜାତୀୟ ଆନ୍ଦୋଳନରେ ଯୋଗଦେଇ ଲକ୍ଷ୍ମୀନାରାୟଣ ଅସ୍ପୃଶ୍ୟତା ନିବାରଣ ଦିଗରେ ଉଲ୍ଲେଖନୀୟ କାର୍ଯ୍ୟ କରିଥିଲେ । ନାଗପୁରରେ ପତାକା ସତ୍ୟାଗ୍ରହରେ ଅଂଶଗ୍ରହଣ କରି ସେ ଅଶେଷ ସାହସ ପ୍ରଦର୍ଶନ କରିଥିଲେ । ବିହାର ଓ ଓଡ଼ିଶା ଗଭର୍ଣ୍ଣରଙ୍କ ସମ୍ବଲପୁର ପରିଦର୍ଶନ କାଳରେ ୧୯୨୮ରେ ମଧ୍ୟ ଲକ୍ଷ୍ମୀନାରାୟଣଙ୍କ ନେତୃତ୍ୱରେ ହରତାଳ ପାଳିତ ହୋଇଥିଲା ।

୧୯୩୦ରେ ନାଗରିକ ଆଇନ ଅମାନ୍ୟ ଆନ୍ଦୋଳନ ଓ ଲବଣ ସତ୍ୟାଗ୍ରହରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ମାର୍ଚ୍ଚ ୧୬ରେ ଏକ ସାଧାରଣ ସଭାରେ ତାଙ୍କୁ ଗିରଫ କରାଯାଇଥିଲା । ଜେଲରୁ ଖଲାସ ହେବା ପରେ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ପ୍ରଦାନ କରାଯାଇଥିଲା ।

ଦୁଇବର୍ଷ କାଳ ହଜାରିବାଗ ଜେଲ୍‌ରେ ବନ୍ଦୀ ଜୀବନ ଅତିବାହିତ କରି ଖଲାସ ହେବାପରେ ୧୯୩୪ ଡିସେମ୍ବର ୧୩ ତାରିଖରେ ସେ ସମ୍ବଲପୁରରେ ପହଞ୍ଚି ହରିଜନ ବସ୍ତି ସଫେଇ, ହରିଜନ ଗୃହ ନିର୍ମାଣ, କୂପ ଖନନ, ହରିଜନ ମନ୍ଦିର ନିର୍ମାଣ, ବିଦ୍ୟାଳୟ ନିର୍ମାଣ ଓ ସାମାଜିକ କ୍ଷେତ୍ରରେ ହରିଜନମାନଙ୍କର ବିକାଶ ପ୍ରଭୃତି ରଚନାତ୍ମକ କାର୍ଯ୍ୟରେ ମନୋନିବେଶ କରିଥିଲେ । ଝାରସୁଗୁଡ଼ା ନିକଟବର୍ତ୍ତୀ ପଞ୍ଚପଡ଼ା ଗ୍ରାମ ତାଙ୍କର ମୁଖ୍ୟ କର୍ମକେନ୍ଦ୍ର ଥିଲା ।

ସମ୍ବଲପୁର ଜିଲ୍ଲା ପୁନର୍ଗଠନ ତଥା ଜମିଦାର ଓ ରାଜାରାଜୁଡ଼ାଙ୍କ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରିବାରେ ସେ ଅଗ୍ରଣୀ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ମଧ୍ୟ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

ବମ୍ବେଠାରେ ଜାତୀୟ କଂଗ୍ରେସ ବୈଠକରେ ଯୋଗଦାନ କରି ସମ୍ବଲପୁର ଫେରିବା ପରେ ତାଙ୍କୁ ପୁନର୍ବାର ଗିରଫ କରାଯାଇଥିଲା । ଏହି ଅନ୍ୟାୟ ଗିରଫଦାରିର ପ୍ରତିବାଦ କରି ବହୁ କଂଗ୍ରେସକର୍ମୀ ଗିରଫ ହୋଇଥିଲେ । କେତେକ ନେତାଙ୍କୁ ଦେଶରକ୍ଷା ଆଇନ ବଳରେ ଗିରଫ କରାଯାଇଥିଲା । ଅଭିଯୋଗ ପ୍ରମାଣିତ ନହେବାରୁ ସେମାନଙ୍କୁ ଖଲାସ କରାଗିବାପରେ ପୁନରାୟ ସମ୍ବଲପୁରରେ ଅଟକ ରଖାଯାଇଥିଲା ।

୧୯୪୬ରେ ଲକ୍ଷ୍ମୀନାରାୟଣ ଓଡ଼ିଶା ବିଧାନ ସଭାର ସଦସ୍ୟ ଭାବରେ ନିର୍ବାଚିତ ହୋଇଥିଲେ । ଲକ୍ଷ୍ମୀନାରାୟଣଙ୍କ ସାହସ, ତ୍ୟାଗ ଓ ଦେଶପ୍ରୀତି ସମ୍ବଲପୁରରେ ସ୍ୱାଧୀନତା ଆନ୍ଦୋଳନକୁ ଜୀବନ୍ତ କରି ରଖିଥିଲା ।

୧୯୬୧ ମଇ ମାସ ୩୦ ତାରିଖରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଜନ୍ମଶତବାର୍ଷିକୀ ଉତ୍ସବରେ ଯୋଗଦାନ ଲାଗି ଝାରସୁଗୁଡ଼ାରୁ ଭଲାଇ

ଅଭିମୁଖେ ଯାତ୍ରା କରୁଥିବାବେଳେ "ଚଳନ୍ତା ରେଳଗାଡ଼ିରେ ଆତତାୟୀର ଆକ୍ରମଣରେ ତାଙ୍କର ଜୀବନ ପ୍ରଦୀପ ନିର୍ବାପିତ ହୋଇ ଯାଇଥିଲା ।

ଜୀବନକାଳ ମଧ୍ୟରେ ସେ ବରାବର କହୁଥିଲେ—"ଆନ୍ଦୋଳନ ହିଁ ମୋର ଜୀବନ ।"

( ଲେଖକଙ୍କର ଏଇ ଲେଖ ଭାରତ ସରକାରଙ୍କ ପ୍ରେସ୍ ଇନ୍‌ଫର୍-ମେସନ୍ ବ୍ୟୁରୋ କର୍ତ୍ତୃକ ପରିବେଷିତ ହୋଇ ଓଡ଼ିଶାର ପ୍ରାୟ ସମସ୍ତ ସମ୍ବାଦ-ପତ୍ରରେ ତା ୩୦ । ୫ । ୧୯୮୭ ରିଖ ଶୁକ୍ରବାର ସଂଖ୍ୟାରେ ଓ ନୂଆଦିଲ୍ଲୀରୁ ପ୍ରତିରକ୍ଷା ମନ୍ତ୍ରଣାଳୟ କର୍ତ୍ତୃକ ପ୍ରକାଶିତ ଦୈନିକ ସମାଚାରରେ ପ୍ରକାଶିତ ହୋଇଥିଲା । )

ଏହା ଥିଲା ସଂକ୍ଷେପରେ ବର୍ଣ୍ଣିତ ଏକ ପୂର୍ଣ୍ଣାଙ୍ଗ ଜୀବନୀ । ବିଶେଷ ଅବକାଶରେ ପାଠକ ମହଲରେ ଦୀର୍ଘ ଜୀବନୀ ପାଠଲାଗି ମଧ୍ୟ ଆଗ୍ରହ ସୃଷ୍ଟି ହୋଇଥାଏ । ଜୀବନୀ କିମ୍ବା ଜୀବନ ବୃତ୍ତାନ୍ତର କୌଣସି ଅଂଶବିଶେଷ ଆହୁରି ବିସ୍ତୃତ ଭାବରେ କିମ୍ବା ସଂକ୍ଷେପରେ ମଧ୍ୟ ଲେଖା ଯାଇଥାଏ ।

କିନ୍ତୁ ବ୍ୟକ୍ତିତ୍ୱ ଉପରେ ଆଲୋକପାତ ସମୟରେ ଜୀବନୀର ଅନ୍ୟାନ୍ୟ ଦିଗ ତଥା ଦୋଷ ତ୍ରୁଟି ସମ୍ପର୍କରେ ମଧ୍ୟ ଉଲ୍ଲେଖ କରି ତାର ସାମାଜିକ ପ୍ରାସଙ୍ଗିକତା ସମ୍ବନ୍ଧରେ ମଧ୍ୟ ବିଶ୍ଳେଷଣ କରାଯାଏ ।

ପୁସ୍ତକ ତଥା ଅନ୍ୟାନ୍ୟ ସଂକଳନ, ସ୍ମରଣିକା ପ୍ରଭୃତିରେ ଜୀବନୀ ଆଦି ପ୍ରକାଶନର ବିସ୍ତୃତ କ୍ଷେତ୍ର ରହିଥିବାବେଳେ ସମ୍ବାଦପତ୍ର ଓ ସାମ୍ବାଦିକତା ଏହି କାର୍ଯ୍ୟରେ କାହିଁକି ସଂପୃକ୍ତ ହେବ ବୋଲି ପ୍ରଶ୍ନ କରାଯାଇପାରେ । ଏହାର ଉତ୍ତର ମଧ୍ୟ ଅତି ସଂକ୍ଷିପ୍ତ—ସାମ୍ବାଦିକର କାର୍ଯ୍ୟ ବ୍ୟକ୍ତିବିଶେଷ ସାଙ୍ଗକୁ ବ୍ୟକ୍ତିର କାର୍ଯ୍ୟକଳାପ ପ୍ରତି ଆସକ୍ତ ହୋଇଥାଏ । ସାକ୍ଷାତକାର ଷେତ୍ରରେ ମଧ୍ୟ ଜୀବନୀ ଅଥବା ବ୍ୟକ୍ତିତ୍ୱ ସମ୍ପର୍କରେ ବର୍ଣ୍ଣନା କରାଯାଇଥାଏ । ତେବେ ସାମ୍ବାଦିକ ନିଜର ଆତ୍ମୀୟ ସ୍ୱଜନଙ୍କ ଜୀବନୀ ଅଥବା ବ୍ୟକ୍ତିତ୍ୱ ବର୍ଣ୍ଣନାରେ ବିଶେଷ ରୁଚି ରଖିବା ଶୋଭନୀୟ ନୁହେଁ ।

ପୁନଶ୍ଚ ନିଜେ ନିଜର ଢୋଲ ପିଟିବା ମଧ୍ୟ ଉତ୍ତମ ରୁଚିଜ୍ଞାନର ପରିଚୟସୂଚକ ନୁହେଁ । କେତେକ ସମ୍ବାଦପତ୍ରରେ ସେହି ସମ୍ବାଦପତ୍ରର ସମ୍ପାଦକ କିମ୍ବା ସାମ୍ବାଦିକଙ୍କ ଜୀବନୀ, ଭାଷଣ ଓ ଫଟୋ ଇତ୍ୟାଦି ବରାବର ପ୍ରକାଶିତ ହେଉଥିବା ପରିଲକ୍ଷିତ ହୁଏ । ସ୍ଥଳବିଶେଷରେ ଏହା ସ୍ମରଣୀୟ ହେଲେ ହେଁ ଏହା ସମ୍ବାଦପତ୍ରର ଏକ ସ୍ଥାୟୀ ସ୍ତମ୍ଭ ହୋଇନପାରେ ।

ଲେଖନ କଳାରେ ସାମ୍ବାଦିକର ଜ୍ଞାନ, ଅଭିଜ୍ଞତା, କୁଶଳତା ଓ ଉଦ୍ଦେଶ୍ୟ ତଥା ବ୍ୟକ୍ତିତ୍ୱର ନିର୍ଯ୍ୟାସ ପ୍ରତିଫଳିତ ହୋଇଥାଏ । କାରଣ, "We tend to judge people by our own standards."

□ □ □

# ଉପସଂହାର

ପ୍ରତ୍ୟେକ ଗଣମାଧ୍ୟମରେ ସାମ୍ବାଦିକତା ଏକ ବଳିଷ୍ଠ ଅଙ୍ଗରୂପେ ସ୍ୱୀକୃତ । ସାମ୍ବାଦିକତାର କାର୍ଯ୍ୟ କୌଣସି ନିର୍ଦ୍ଦିଷ୍ଟ ପରିସର ମଧ୍ୟରେ ସୀମିତ ନୁହେଁ । ତେଣୁ ସାମ୍ବାଦିକର ଅଭିଜ୍ଞତା ହିଁ ଗୁରୁତ୍ୱପୂର୍ଣ୍ଣ ଉପଲବ୍ଧି । କ୍ରମେ ସାମ୍ବାଦିକତା ସମ୍ପୃକ୍ତ ସାମ୍ବାଦିକର ଅଭିଜ୍ଞତା ଦ୍ୱାରା ନିୟନ୍ତ୍ରିତ ଓ ବଳିଷ୍ଠ ହୋଇଥାଏ ।

ସାମ୍ବାଦିକର କାର୍ଯ୍ୟ ଓ କାର୍ଯ୍ୟଫଳ ଉପରେ ଅନେକ ଅନୁସନ୍ଧିତ୍ସୁ ଦୃଷ୍ଟି ନିବଦ୍ଧ । ସାମାଜିକ ବିକାଶ କ୍ଷେତ୍ରରେ ଏକ ମହତ୍ତ୍ୱପୂର୍ଣ୍ଣ ପର୍ଯ୍ୟାୟରେ କାର୍ଯ୍ୟରତ ଥିବାରୁ ସାମ୍ବାଦିକ ଓ ସାମ୍ବାଦିକତାର ଗୁରୁଦାୟିତ୍ୱ ସ୍ୱତଃ ଉଦ୍ଭାସିତ ହେଉଛି ।

ବିଶ୍ୱର ଦର୍ପଣ ସଦୃଶ ସମ୍ବାଦପତ୍ରର ଉତ୍ତରୋତ୍ତର ବିକାଶ ସାଙ୍ଗକୁ ଆଗାମୀ ଦିନରେ ସାମ୍ବାଦିକର କାର୍ଯ୍ୟ ପଦ୍ଧତିରେ ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ ପରିବର୍ତ୍ତନ ସ୍ୱତଃ ସଙ୍ଘଟିତ ହେବ, ଯେପରି ମୂଳରୁ ହୋଇ ଆସୁଛି ।

ପ୍ରତ୍ୟେକ ସାମ୍ବାଦିକ କାର୍ଯ୍ୟ ସମ୍ପାଦନ ବେଳେ ସିଦ୍ଧିର ସ୍ୱାକ୍ଷର ଦେବାଲାଗି ଦୃଢ଼ପ୍ରତିଜ୍ଞ ହେବା ଉଚିତ । ଇ. ରୁଜ୍‌ଭେଲ୍ଟ କହିଥିଲେ, "Remember, no one can make you feel inferior without your consent." ନୂତନ ସାମ୍ବାଦିକ କିମ୍ବା ପୁରୁଖା ସାମ୍ବାଦିକ, ସମସ୍ତେ ମନେ ରଖିବା କଥା, "Years do not make sages, they only make old man." (ଆର୍ନି ସୋଫି) ପୁନଶ୍ଚ ଉତ୍କଳମଣିଙ୍କ ଭାଷାରେ—

"ମାନବ ଜୀବନ ନୁହିଁଇ କେବଳ
ବର୍ଷ ମାସ ଦିନ ଦଣ୍ଡ ॥
କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ॥"

